# ନୀହାରିକା

ତୃଣ ଗୁଚ୍ଛ, ତାସବାଛି, ଭାଗ୍ୟଚକ୍ର, ସଭ୍ୟତାର ତଳେ,
ମନରଭୂତ, ବାରମଜା, ମୁକ୍ତଆକାଶର ବହଙ୍ଗ,
ନୂଆ ଦୁନଆ, ସହଯୋଗ, ଝଙ୍କାର ଓ କୁଲି
ପ୍ରଭୃତି ପୁସ୍ତକର ପ୍ରଣେତା

ଶ୍ରୀ ଅନନ୍ତ ପ୍ରସାଦ ପଣ୍ଡା, ବି. ଏ.



ଓଡ଼ିଆ ଲେଖକ ସହଯୋଗ ସମିତି ଲି:, କଟକ

ପ୍ରଥମ ସଂସ୍କରଣ—ଜୁଲାଇ ୧୯୪୮

  

—ପ୍ରକାଶକ—

ଶ୍ରୀ ଜଗନ୍ନାଥ ମହାନ୍ତି

ଓଡ଼ିଆ ଲେଖକ ସହଯୋଗ ସମିତି ଲି:

ବାଲୁବଜାର, କଟକ

  

—ପ୍ରଚ୍ଛଦପଟ—

ଶ୍ରୀ ଗୋପାଳ କାନୁନଗୋ

  

—ମୁଦ୍ରାକର—

ଶ୍ରୀ ମଦନମୋହନ ଦାସ

ମୁକୁର ପ୍ରେସ, କଟକ

  



  

ଏକ ଟଙ୍କା ଆଠ ଅଣା



ଯେ ମୋର କବିତା ଗୁଡ଼ିକୁ ସବୁଠାରୁ ବେଶୀ ଭଲପାଏ,
ତାରି ହାତରେ ମୋର ଅନ୍ତରର ଅସରନ୍ତି
ସ୍ନେହର ନିଦର୍ଶନ ସ୍ୱରୂପ ଅର୍ପଣ
ଇତି....................

# ସୂଚନା

ସୃଷ୍ଟିତତ୍ତ୍ୱ କହେ—ସୂର୍ଯ୍ୟ, ଚନ୍ଦ୍ର, ତାରା, ଗ୍ରହ, ଉପଗ୍ରହ ପ୍ରଭୃତି ସମଗ୍ର ସୌର ଜଗତ୍‌ର ଆଦି ଜନନୀ ହେଉଛନ୍ତି—ନୀହାରିକା । ନୀହାରିକାର ଜ୍ୟୋତିଃ ପୁଞ୍ଜ ହିଁ ନିବିଡ଼ ମହାନ୍ଧକାରର ଅନନ୍ତ ଗର୍ଭରୁ ପ୍ରଥମ ଆଲୋକ ଓ ଜୀବନର ସତ୍ତାର ଆବିର୍ଭାବ କରାଇଥିଲା । ସେହିପରି ମୋର ଅନ୍ତରର ନିବିଡ଼ତମ ମୋହାନ୍ଧକାର ମଧ୍ୟରେ ପ୍ରଥମେ ଯେତେବେଳେ ଗୋଟିଏ ସ୍ୱଚ୍ଛ ଜ୍ୟୋତିଃ ରେଖା ଫୁଟି ଉଠିଲା ସେତେବେଳେ ମୁଁ ଯନ୍ତ୍ରଚାଳିତ ପରି ଲେଖି ପକାଇଥିଲି—

ନ ଥିଲି ଲୋଡ଼ି ତାକୁ ଆସିଲା ନିଜ ମନେ
ମୁଭୁଲା ଘରେ ମୋର ଏକାକୀ ସେ ଗୋପନେ
ଅଚହ୍ନା ଅତିଥି ସେ କହିଲା କେତେ କଥା
ଲଗାଇ ଦେଲା ପ୍ରାଣେ ତଙ୍କତେ କ ମମତା

   

ଗଞ୍ଜାମ ଜିଲ୍ଲାର ପୋଲସରା ନାମକ ପଲ୍ଲିରେ ଗୋଟିଏ ବସ୍ତା-ବାସ (ତମ୍ବୁ) । ମଧ୍ୟରେ ମୁଁ ଥାଏଁ ଯେତେବେଳେ ସରକାରୀ ବନ୍ଦୋବସ୍ତ କର୍ମଗୃହୀ ଭାବରେ । କୌଣସି କାରଣରୁ ଯେତେବେଳେ ମୋର ଜୀବନରେ ଲାଗିଥିଲା ଏକ ଗୁରୁ ଅଘାତ । ନାନା ପ୍ରକାର ଆଶଙ୍କା ଓ ଅନିଶ୍ଚୟତାରେ ମୋର ଅନ୍ତର ଦୋହଲି ଉଠୁଥିଲା । ମୋର ଅନ୍ତର ଯେତେବେଳେ ହତାଶାର ଘୋର ଅନ୍ଧକାର ମଧ୍ୟରେ ଯଷ୍ଟିହରା ଅନ୍ଧ ପରି ପଥ ଖୋଜି ବୁଲୁ ଥିଲା ଠିକ୍ ସେତିକବେଳେ ମୁଁ ଅକସ୍ମାତ ଭେଟ ପାଇଲି ସେଇ ଅଚିହ୍ନା ଅତିଥିର । ସେତେବେଳେ ମୁଁ ଗାଇ ଉଠି ଥିଲି—

କୁହୁକ କଲା ପରି କାହାଁର ହାତ ଛୁଇଁ
ନିମିଷେ ଦେଖିଲି ମୁଁ ରଙ୍ଗ କି ଆସେ ଉଇଁ ।

ବାସ୍ତବିକ ସେଇ ଅଚିହ୍ନା ଅତିଥିର ଆଗମନରେ ମୋର ଅନ୍ତର ମଧ୍ୟରେ ଏକ ନୂତନ ଆଶାର ଆଲୋକ ରେଖା ମୁଁ ସ୍ପଷ୍ଟ ଦେଖି ପାରିଥିଲି । କିନ୍ତୁ ସେ ଆଲୋକ ପ୍ରଥମେ ସ୍ଥିର ଉଜ୍ଜ୍ୱଳ ନ ହୋଇ ବିଜୁଳିର ମେଘ ପରି କ୍ଷଣେ କ୍ଷଣେ ପ୍ରତିଭାତ ହୋଇ ପୁଣି ଲିଭି ଲିଭି ଯାଉଥିଲା । ସେଥିପାଇଁ ମୁଁ ଗାଇ ଥିଲି—

ପୁଲକେ ଅନ୍ତର ମୋ ଉଠିଲା ଯେବେ ଭରି
କୁହୁକ ପରି କାହିଁ ଗଲା ସେ ଅପସରି
ଗୁହାଁଳ ଘୂରି ଫେରେ ନିର୍ଘାଟ ଅନ୍ଧକାର
ଗଲାଣି ସେତ ଚାଲି ଅତୀତ ପରପାର ।

ପୁଣି ଆସିଲା ସେ । ସେତେବେଳକୁ ମୁଁ ଗଞ୍ଜାମ ଜିଲ୍ଲାର ଗୋଲନ୍ଥରା ପଲ୍ଲୀ ଛାଡ଼ି ଯାଇ ପଢୁଥିଲି ସୁଦୂର ସମ୍ବଲପୁର ଜିଲ୍ଲାର ବରଗଡ଼ରେ । ସେତେବେଳେ ପୁଣି ଲେଖିଲି—

କଦାପେ ଫୁଟିଲା ବସନ୍ତ ସୁଷମା
କାହାର କୁହୁକ ବଳେ
ନବ ଯଉବନ ଅଙ୍କୁର ଉଠିଲା
ଯଉବନ ଲତା ତଳେ
କେଭି ଯାଉଥିଲା ବାରୁଣୀ ବଦନୁ
ଅରୁଣ କରୁଣ ଛବି
କି କୁହୁକ ବଳେ ଉଇଁ ଆସିଲା ଗୋ
ନୂଆ ଚେତ ବାଳରବି ।

ପୁଣି ହେଉ ଆଶା ନିରାଶାର ଲୁଚକାଳି ଖେଳ ! ମନ ମଧ୍ୟରେ କେତେ ଭାବ ଆସେ ପୁଣି ନିମିଷେ ଉଭେଇ ଯାଏ । ମୁଁ ତାକୁ ଧରି ରଖିବାକୁ ଚେଷ୍ଟା କରେଁ କାଗଜ ପେନ୍‌ସିଲରେ । କେତେବେଳେ ସେ ଆସେ କେତେବେଳେ ସେ ଯାଏ ତାର ସ୍ଥିରତା ନ ଥାଏ । ସେଥିପାଇଁ ଦାନ୍ତ ଘଷୁଁ ଘଷୁଁ, ଗାଧୋଇ ଯାଉଁ ଯାଉଁ, ଶୋଇ ଥିଲାବେଳେ, ସ୍କୁଲ ଯାଉଥିଲାବେଳେ, ଯେତେବେଳେ ପାରେଁ ତାକୁ ଧରି ରଖିବାକୁ ଚେଷ୍ଟା କରେଁ ।

ଶେଷରେ ଦେଖିଲି ଯେ ଜୀବନଟାହିଁ ହେଉଛି ଖାଲି ଏଇ ଆଶା ନିରାଶାର ଲୁଚକାଳି ଖେଳ । କିନ୍ତୁ ସେ ଖେଳ କି ମନୁଷ୍ୟ ନିଜ

ଇଚ୍ଛାରେ କରୁ ନାହିଁ । କିଏ ଯେପରି ସୂତ୍ରଧର ଯବନିକା ଅନ୍ତରାଳରେ ରହି ମନୁଷ୍ୟଙ୍କୁ ଖେଳାଉଛି, ବୁଲାଉଛି—ମୋର ଏଇ ଭାବଧାରା କ୍ରମଶଃ ଘନୀଭୂତ ହୋଇ ଉଠିଛି ଅସ୍ପଷ୍ଟ କବିତାରେ, ସେଥିପାଇଁ ମୁଁ ଗାଇଥିଲି—

ଯେ ପଥେ ନଥି ଶୃଙ୍ଖଳ          ତୁମେ ଗୋ ମୋ ନିୟତି
ସେ ପଥେ ଯିବା ପଣ          ନାହିଁ ମୋ ଆନ ଗତି
ନିଜର ଭଲ ମନ୍ଦ          ଭବିଷ୍ୟ ପରପାରେ
ପାରେ ତ ନାହିଁ ଦେଖି          ଅଜ୍ଞାନ ଅନ୍ଧକାରେ
ଲାଗିଲା ପରି ଭୂତ,          କରଇ ଯେବେ ଯାହା
ଜୁଟେନି କି ତୁମରି ଗୋ          ଇଙ୍ଗିତ ବଳେ ତାହା ?

ମୋର ଏଇ ଭାବଧାରା ଫୁଟି ଉଠିଛି ପ୍ରାୟ ଏଥିରେ ସନ୍ନିହିତ ବହୁ କବିତାରେ । ସୃଷ୍ଟିର ପ୍ରତ୍ୟେକ ଜୀବ ପ୍ରାଣୀଙ୍କ ମଧ୍ୟରେ ମୁଁ ସେଇ ଅଲକ୍ଷ୍ୟ ସୂତ୍ରଧରର କର୍ତ୍ତୃତ୍ୱ ଅନୁଭବ କରି ପାରୁଛି । ସେଥିପାଇଁ ମୁଁ ଗାଇ ଚାଲିଛି—

ଲୁଚିଛି ନ ପାରେଁ କାର          ଅନନ୍ତ ମହିମା
ସୃଜନ କରଏ ଋତୁ          ଶ୍ୟାମ ମାଧୁରିମା ?
ବିଶ୍ୱର ଜୀବନୀ ଶକ୍ତି          ତା ଗର୍ଭେ ନିହିତ—
କଳା ସଂଗୋପନେ କାର          ଅଦୃଶ୍ୟ ଇଙ୍ଗିତ ?
ସୁଶ୍ୟାମଳ ଶସ୍ୟେ ଯେବେ          କ୍ଷେତ୍ର ଉଠେ ଭରି
ବିଶ୍ୱ ପ୍ରାଣୀ ନାଚି ଉଠେ          ଆନନ୍ଦ ଲହରି

ସେ ଲହରି ତାଳେ ତାଳେ ସୃଜନ ସଂଗୀତ
ବିଶ୍ୱ ବୀଣା ତାରେ ସଦା ଝୁଅଇ ଧ୍ୱନିତ
ଆଶାର ମୋହନ ବଂଶୀ ଡାକେ ବିଶ୍ୱପ୍ରାଣେ
ବିଶ୍ୱବାସୀ ଧାଏଁ ତେଣୁ ଆନନ୍ଦ ସଂଧାନେ
କର୍ମର ପ୍ରବାହ ଖେଳେ ବିଶ୍ୱ ପାରାବାରେ
ସୃଷ୍ଟିର ଏ ଗୂଢ଼ ମର୍ମ ବୁଝି ନାହିଁ ପାରେ ।

ମୋର ଏ ମନୋଭାବ ମୋତେ ଯଥେଷ୍ଟ ପ୍ରେରଣା ଓ କର୍ମଶକ୍ତି ଯୋଗାଇ ଦେଇଛି । ଜୀବନରେ ନାନା ଘାତ ପ୍ରତିଘାତ ମଧ୍ୟରେ ମୁଁ ସେଇ ଅଦୃଷ୍ଟ ଅଜ୍ଞେୟ ଶକ୍ତିର ମଙ୍ଗଳମୟୀ ଇଚ୍ଛାର ସତ୍ତା ସ୍ପଷ୍ଟ ଅନୁଭବ କରି ପାରିଛି । ସେଥିପାଇଁ ହତାଶାର ଧକ୍କାରେ ମୋର ଅନ୍ତର ଭାଙ୍ଗି ପଡ଼ିନାହିଁ, ମୋର କର୍ତ୍ତବ୍ୟ ଶିଥିଳ ହୋଇ ନାହିଁ, ବରଂ ତାହା ଶତ ଗୁଣରେ ଉଜ୍ଜୀବିତ ହୋଇ ଉଠିଛି । ମୁଁ ଆଶା ମରୀଚିକାର ପଛରେ ଧାଇଁଛି ଓ ଗାଇଛି—

ମରୀଚିକା ପଛେ ପଛେ ଧାଇଁବ କେବଳ
ନ ପାଏଁ ପଛକେ ତୃଷା ନିବାରଣେ ଜଳ ।
ଅନନ୍ତ ପିପାସା ବହି ମୋ ଅନ୍ତର ପୁରେ
ଚାଲୁଥିବ ଖାଲି ଧାଇଁ ଦୂରେ, ଅତି ଦୂରେ ।
ଆଶାର ମୋହନ ବଂଶୀ ବାଜୁ ମୋ ପରାଣେ
ଧାଉଁଥିବ ଅନୁକ୍ଷଣ ତାହାର ସଂଧାନେ ।

ନ ମିଳୁ ପଛକେ ମୋର ଇପ୍‌ସିତ ଧନ,
ସକଳ ସାଧନା ପଛେ ହେଉ ଅକାରଣ ।
ତଥାପି ନ ଲୋଡେ ମୁଁ ହିଁ ଆଶାର ବିନାଶ
ନ ଲୋଡଇଁ ଜୀବନର ଚରମ ବିନାଶ ।

* * * *

ନ ହେଉ ପଛକେ ସବୁ ଆଶା ମୋ ସଫଳ
ଆଶା ମାତ୍ର ଥାଉ ବନ୍ଧୁ ଜୀବନ ସମ୍ବଳ ।

ଏଇ ଅନନ୍ତ ଅଦମ୍ୟ ଆଶାବାଦହିଁ ମୋର ଜୀବନ ପଥରେ ମୋତେ ଅସୀମ ସାହାଯ୍ୟ ଦେଉଛି । ମୁଁ ପ୍ରାଣେ ପ୍ରାଣେ ଅନୁଭବ କରୁଛି ଯେ ଆଶାହିଁ ଜୀବନ । ଆଶାର ବିନାଶହିଁ ମୃତ୍ୟୁର କାରଣ । ସେଇ ଆଶା ମାନବର ପ୍ରାଣରେ ଇଚ୍ଛାଶକ୍ତି ଜାଗ୍ରତ କରାଏ ଓ ସେଇ ଇଚ୍ଛାଶକ୍ତିହିଁ ମାନବର ଭାଗ୍ୟ ବିଧାତା ବୋଲି ମୋର ମନେ ହୁଏ । ବାସ୍ତବିକ ତାହାହିଁ ଅଭ୍ରାନ୍ତ ସତ୍ୟ ବୋଲି ମୁଁ ଏହି ନେଇ ଜୀବନର ସମସ୍ତ ଉଠା ପଡ଼ା ଗଡ଼ାଣିଆ ପିଚ୍ଛିଳ ରାସ୍ତାରେ ଅବିଚଳିତ ଭାବରେ ଗତି କରି ପାରୁଛି—ବାସ୍ତବିକ ଭାଗବତକାର ଯଥାର୍ଥ କହି ଯାଇଛନ୍ତି—

ଏ ମନ ଲୋଡୁଥାଇ ଯାହା
କାଳେ ପ୍ରାପତ ହୁଏ ତାହା ।
ମନର ମୂଳେ ଏ ଜଗତ
ମନକୁ କେବା ସମରଥ ।

ସ୍ୱାମୀ ରାମତୀର୍ଥ କହି ଯାଇଛନ୍ତି—

We build our future thought by thought.

* * * *

Thought is another name of fate.

ଏଇ ମନୋଭାବ ମୋର କବିତାର ପଦେ ପଦେ ଆପେ ଆପେ ଫୁଟି ଉଠିଛି । ବାସ୍ତବିକ ସତ କହିବାକୁ ଗଲେ ମୋର କବିତା ଗୁଡ଼ିକ ମୋ ଅନ୍ତରର ସ୍ୱତଃସ୍ଫୂର୍ତ୍ତ ଭାବଧାରାର ସହଜ ଅଭିବ୍ୟକ୍ତି ଛଡ଼ା ଅନ୍ୟ କିଛି ନୁହେଁ ।

ମୁଁ କେବେ ଜୀବନରେ ଭାବି ନ ଥିଲି ଯେ ମୁଁ କବିତା ଲେଖିବି । କିନ୍ତୁ ସେ ଆପେ ଆପେ ଆସି ଧରାଛୁଆଁ ଦେଇଛି ଓ ପରେ ମୁଁ ଦେଖି ଅସ୍ତମ୍ଭିତ ହୋଇଛି ଯେ ସେ କିପରି ମୋର ଅନ୍ତର ମଧ୍ୟରେ ଲୁକ୍କାୟିତ ଥିଲା ଅଥଚ ମୁଁ ତାକୁ ଧରି ପାରୁ ନ ଥିଲି, ସେଇଥି ପାଇଁ ମୁଁ ଗାଉଛି—

**କିଏ ସେ ଗୋ ତୁମେ ଲୁଚି ରହିଥିଲ**
**ଅ'ନ୍ତର ପୁରେ ମମ**
**ଓଢ଼ଣା ଉଠାଲେ ତାଙ୍କି ମୁଖ ଶଶି**
**ମୁଗ୍ଧ ବଧୂଟି ସମ ।**

* * * *

ଆସିଲ ଗୋ ଯେବେ ନବ ବଧୂ ମୋର
ନୂପୁର ବଜାଇ ପାଦେ
ଉଲ୍ଲା'ସେ ଥର ଉଠିଲା ମୋ ହୃଦ
ସେଇ ରୁଣୁ ଝୁଣୁ ନାଦେ ।

* * * *

ତୁମରି ପରଶେ ଭୁଲି ଗଲି ମୁଁ ଗୋ
ସକଳ ବିରହ ବ୍ୟଥା;
ଢଳାଇ ପଡ଼ିଲି ତୁମରି କୋମଳ
ବ'କ୍ଷେ ରଖି ମୋ ମଥା ।
ବିଶ୍ୱର ସାର ରୂପସୀ ଗୋ ମୋରେ
ନେଲ ଯେବେ କୋଳ କରି
ଧ'ନ୍ୟ ଆନନ୍ଦେ ଅ'ନ୍ତର ମୋରେ
ସହସା ଗଲା ଗୋ ଭରି ।

ବାସ୍ତବିକ ଯେତେବେଳେ ମୁଁ ଅନ୍ତର ମଧ୍ୟରେ ସେଇ ଚିର ଶାନ୍ତିମୟୀ ଆଶା ସଞ୍ଚାରିଣୀ ଭାବନାର ସ୍ପର୍ଶ ଅନୁଭବ କଲି ସେତେବେଳେ ମୋର ସମସ୍ତ ଅନ୍ତର ଏକ ଅନନୁଭୂତପୂର୍ବ ପୁଲକରେ ଭରି ଉଠିଥିଲା । ମୁଁ ଅତୀତର ସମସ୍ତ ଗ୍ଲାନି ଓ ହତାଶାକୁ ଭୋଳି କରି ଦୂରେ ନିକ୍ଷେପ କରି ଏକ ନବୀନ ଆଶାର ଆନନ୍ଦରେ ଉନ୍ମତ୍ତ ହୋଇ ଆଗକୁ ଆଗକୁ ଧାଇଁ ଚାଲିଥିଲି । ସେଇ ଭାବଧାରା ମୋ ପ୍ରାଣରେ ନିରବଧି ଜାଗରୁକ ଥାଉ ଏହାହିଁ ମୋର କାମନା

ମୁଁ ବିପଦ ସଂକୁଳ 'ବର୍ତ୍ତମାନ'ର ପିଚ୍ଛିଳ ପଥରେ ଚାଲି ଚାଲି ଯେତେଥର ଝୁଣ୍ଟି ପଡ଼ିଛି ସେତେଥର ପୁଣି ଉଠି ଚାଲିଛି ଆଗକୁ କେବଳ ସେଇ ଭାବନା ଓ ବିଶ୍ୱାସ ଉପରେ ନିର୍ଭର କରି । ସେଥିପାଇଁ ମୁଁ ଗାଉଛି—

ନ ପାରଇଁ ଜାଣି ଯେଣୁ ଭବିଷ୍ୟତ କଥା
ଅକାରଣ କିଆଁ ଲଭିବଇଁ ମନୋବ୍ୟଥା ?
ବର୍ତ୍ତମାନ ଯାହା ମୋତେ ଲାଗୁ ଅଛି ବିଷ
ହୋଇ ପାରେ ଭବିଷ୍ୟତେ ତାହା ଶୁଭାଶୀଷ ।
ସକଳ ନିୟନ୍ତା ତୁମେ ଜଗତ କରତା
ତୁମେ ଏକା ଜାଣ ସିନା ତୁମ ମନ କଥା ।

* * * * *

ତୁମର ଉଦ୍ଦେଶ୍ୟ ସିନା ତୁମକୁହିଁ ଜଣା
ବୃଥା ଭାବି ତେବେ କିଆଁ ହେବ ପଥ ବଣା ?

ବାସ୍ତବିକ ମନୁଷ୍ୟ ଯଦି ଏଇ ଭାବଧାରାର ବଶବର୍ତ୍ତୀ ହୋଇ ଅଗ୍ରସର ହୁଏ ତେବେ ମୋର ଧାରଣା ସେ ଅବଲୀଳା ଭାବରେ ଜୀବନର ପିଚ୍ଛିଳ ପଥରେ ଗତି କରି ପାରିବ ।

ଆଶା କରେଁ ମୋର ଏଇ କ୍ଷୁଦ୍ର କବିତା ଗୁଡ଼ିକ ସହୃଦୟ ପାଠକ ପାଠିକାମାନଙ୍କ ପ୍ରାଣରେ ଆଶା ଓ ସାନ୍ତ୍ୱନାର ବାଣୀ ଶୁଣାଇ ପାରିବ ଓ ଅନାବିଳ ଆନନ୍ଦର ସ୍ୱାଦ ଚଖାଇ ପାରିବ ।

କବିତା ଗୁଡ଼ିକ କେଉଁ ସମୟର ଲେଖା ତାହା ପ୍ରତ୍ୟେକ କବିତାର ପାଦ ଦେଶରେ ଦେଖାଇ ଦିଆ ଯାଇଛି ଓ କବିତା

ଗୁଡ଼ିକୁ ଯଥା ସମ୍ଭବ ସମୟାନୁସାରେ ସଜ୍ଜିତ କରି ରଖା ଯାଇଛି କାରଣ ସେଥିରୁ ପାଠକ ପାଠିକାମାନେ ଲେଖକର କ୍ରମବିକାଶ ଓ ଧାରାବାହିକ ଅଭିବ୍ୟକ୍ତି ସମ୍ପୂର୍ଣ୍ଣ ରୂପେ ଉପଲବ୍ଧି କରି ପାରିବେ ।

ଲେଖା ଗୁଡ଼ିକ ଅନେକ ଦିନ ଅପ୍ରକାଶିତ ଅବସ୍ଥାରେ ପଡ଼ି ରହିଥିଲା । ଶେଷରେ ମୋର ଶ୍ରଦ୍ଧେୟ ବନ୍ଧୁ ଓଡ଼ିଆ ଲେଖକ ସହଯୋଗ ସମିତିର ସୁଯୋଗ୍ୟ ସମ୍ପାଦକ ସାହିତ୍ୟପ୍ରାଣ ଶ୍ରୀ ଲକ୍ଷ୍ମୀନାରାୟଣ ମହାନ୍ତିଙ୍କର ଐକାନ୍ତିକ ଚେଷ୍ଟା ଓ ଉତ୍ସାହରେ ଆଜି ଲୋକ ଲୋଚନ ଗୋଚରେ ହେବାକୁ ସମର୍ଥ ହେଲା । ସେଥିପାଇଁ ତାଙ୍କ ଠାରେ ମୁଁ ମୋର ହୃଦୟର ସ୍ୱତଃ ପ୍ରବୃତ୍ତ କୃତଜ୍ଞତା ଜ୍ଞାପନ କରୁଛି ।

ଉତ୍କଳର ସୁପ୍ରସିଦ୍ଧ ଚିତ୍ର ଶିଳ୍ପୀ ଶ୍ରୀ ଗୋପାଳ କାନୁନଗୋ, ବି: ଏ: ମହାଶୟ ଅନୁଗ୍ରହ କରି ପ୍ରଚ୍ଛଦପଟର ସୁନ୍ଦର ଛବିଟି ଆଙ୍କି ଦେଇ ଥିବାରୁ ତାଙ୍କଠାରେ ମଧ୍ୟ ମୁଁ କୃତଜ୍ଞ । ସର୍ବଶେଷରେ ଓଡ଼ିଆ ଲେଖକ ସହଯୋଗ ସମିତିର କର୍ମଗୁରୁ ଶ୍ରୀମାନ୍ ଜଗନ୍ନାଥ ମହାନ୍ତି ବହୁ ଶ୍ରମ ସ୍ୱୀକାର କରି ଏହାର ମୁଦ୍ରଣରେ ସାହାଯ୍ୟ କରିଥିବାରୁ ମୁଁ ତାଙ୍କୁ ମଧ୍ୟ ବହୁ ଧନ୍ୟବାଦ ଦେଉଛି । ଇତି ।

ଶ୍ରୀ ଅନନ୍ତ ପ୍ରସାଦ ପଣ୍ଡା

କଟକ

ତା ୨୨ । ୭ । ୧୯୪୮



# ଏକ

ନ ଥିଲି ଲୋଡ଼ି ତାକୁ
ଆସିଲା ନିଜ ମନେ,
ମୁକୁଳା ଘରେ ମୋର
ଏକାକୀ ସେ ଗୋପନେ

ଅଚିନା ଅତିଥି ସେ
କହିଲା କେତେ କଥା,
ଲଗାଇ ଦେଲା ପ୍ରାଣେ
ଚକିତେ କି ମମତା ।

ନିଦାଘେ ଦେଲା ଆଣି
ସରସ ମଧୁ ମାସ,
ଅଧରେ ଫୁଟାଇ ସେ
ମଧୁର ମୃଦୁ ହାସ ।

ତପତ ମରୁଭୂମେ
ସେନେହ ବାରି ଧାର,
ବୁହାଇ ଦେଲା ସେତ
ଭରି ମୋ ହୃଦ ସାର ।

କୁହୁକ କଲା ପରି
କାଉଁରି ହାତ ଛୁଇଁ,
ନିଶିଥେ ଦେଖିଲି ମୁଁ
ଅରୁଣ ଆସେ ଉଇଁ ।

ପୁଲକେ ପରାଣ ମୋ
ଉଠିଲା ଯେବେ ଭରି
କୁହୁକ ପରି କାହିଁ
ଗଲାସେ ଅପସରି ।

ଚହିଁଲି ଚଉଦିଗେ
ନିରାଟ ଅନ୍ଧକାର,
ଗଲାଣି ସେତ ଚାଲି
ଅତୀତ ପରି ପାରି ।
ଆସିଲା ଯଦି ଆସେ
ଗଲା ସେ କପାଁ ଚାଲି,
ମମତା ଲଗାଇ ସେ
ଦଣ୍ଡକ ପାଇଁ ଖାଲି ?

—୨—

ଗଲାଣି ସେତ ଚଳି
ନିମିଷେ ଦେଇ ଦେଖା
ରଖିଛି ଖାଲି ତାର
କରୁଣ ସ୍ମୃତି ରେଖା ।

ପୋଲସର (ଗଞ୍ଜାମ)
ତା ୩୧ । ୧୨ । ୧୯୪୦
ସକାଳ ଘ ୫ ଟା





## ଗଳାଣିତ ସବୁ ସତ୍ୟ

ଜୀବନର ଯେତେ କାମନା ବାସନା
ଥିଲା ଯା ପରାଣେ ଭରି ।
ତୃଣ ତଳପରେ ଶୋଇ,
ଦେଖୁଥିଲି କେତେ ସୁଖର ସ୍ୱପନ
ପୁଲକେ ବିଭୋର ହୋଇ ।
ନିଦ ଗଲା ଯେବେ ଛୁଟି,
ସୁଖର ସ୍ୱପନ ଆଶା ମରୀଚିକା
ନିମେଷକେ ଗଲା ତୁଟି ।
ଦେଖେଁ ଚାରିଆଡେ ଚାହିଁ
କ୍ରୂର ବାସ୍ତବତା କରେ କଷାଘାତ
ତଳେ ଦୟା ମାୟା ନାହିଁ ।
ଦେଖେଁ ନିତ ନିତ ପରା
ନ୍ୟାୟ ଅନ୍ୟାୟର ନାହିଁତ ବିଚାର
ଲାଗି ଅଛି ହଣା ମରା ।
ପରାଣରେ ଉଠେ କୋହ;
ସବଳ ଶୋଷଇ ଦୁର୍ବଳ ରକତ
ସମ୍ବଳ ତା ପିଜା ଲୁହ ।

କରି ଶତ ଅତ୍ୟାଚାର
ଧନିକ ଟେକଇ ଧରମର ବାନା
ଦୁଃଖୀ କରେ ହାହାକାର ।
ଦେଖି ଏ ଦୁନିଆ ନୀତି
ବଞ୍ଚୁରଇଁ କେବେ ଆସିବ ସୁଦିନ
ଅମା ନିଶି ଯିବ ଛଡ଼ ?



ବରଗଡ଼ (ସମ୍ବଲପୁର)
ତା ୧୭ । ୯ । ୧୯୮୧
ସକାଳ ଘ ୬ ଣ୍ଟା



# ତିନି

ନିଦାଘେ ଫୁଟିଲା ବସନ୍ତ ସୁଷମା
କାହାର କୁହୁକ ବଳେ,
ନବ ଯଉବନ ଅଙ୍କୁର ଉଠିଲା
ଯଉବନ ଛଟା ତଳେ ?

ନିଭି ଯାଉଥିଲା ବାରୁଣୀ ବଦନୁଁ
ଅରୁଣ କରୁଣ ଛବି,
କି କୁହୁକ ବଳେ ଉଇଁ ଆସିଲା ଗୋ
ନୂଆ ତେଜେ ବାଳ ରବି ?

ମନ ମରୁଭୂମେ ଝରି ଆସିଲା ଗୋ
ସେନେହ ସଲିଳ ଧାରା,
ନବୀନ ଆଶାରେ ଭରି ଉଠିଲା ମୋ
ନିରାଶ ଅନ୍ତର ସାରା ।

ବାମନ ହୋଇ ମୁଁ ବଢାଇଲି ହାତ
ଧରିବି ସରଗ ଶଶୀ,
ଧରୁଁ ନ ଧରୁଁ ମୁଁ କି କୁହୁକ ବଳେ
ଚକତେ ଗଲା କି ଖସି ?

ନିରାଶ ଅନ୍ତରେ ରହିଲି ମୁଁ ଖାଲି
ତା ଗତ ପଥକୁ ଚାହିଁ,
କୁହୁକେ ମିଳିବା ଧନଟି ମୋହର
କୁହୁକେ ଗଲାଟି କାହିଁ ?

ବରଗଡ଼
ତା ୧୯ । ୧ । ୪୧
ସକାଳ ଘ ୭ ଣ୍ଟା



# ଚାରି

ରହିଥିବ ଦୂରେ ନ ଯିବ ପାଶେ
ଦେଖୁଥିବ ଖାଲି ମାନସାକାଶେ
ରାକା ରଜନୀର ଶାରଦ ଶଶି
—ମୁଁ ଏକ ବସି ।

ଢାଳୁଥିବ ଶଶି ଅମିୟ ଧାରା
ପୁଲକ ଉଠିବ ପବନ ସାରା
ପିଇବ ସେ ସୁଧା ଚକୋର ପରି
—ପ୍ରେମେ ଶିହରି ।

ଫୁଟିଥିବ ଯବ ବନେ ମାଳତୀ
ସୁବାସେ ଉଠିବ ଦଗ ଚହଟି
ପୁଲକି ଉଠିବ ପାଷାଣ ହିଆ
—ହୋଇବ ଠିଆ ।

ଚାଲି ଯାଉଁ ଯାଉଁ ସରଣି ପରେ
ଦୂରୁଁ ଥାଇଁ ଖାଲି ଚାହିଁବ ଥରେ;
ନ ଲୋଡ଼ିଇଁ କେବେଁ ଯିବାକୁ ପାଶେ
—ତୋଳିବା ଆଶେ ॥

ନ ଇଚ୍ଛେଁ ତୋଳବ ଫୁଲ୍ଲ କମଳ,
କାଲେ ଝଡ଼ି ଯିବ କୋମଳ ଦଳ;
ଦେଖୁ ଥିବ ଦୂରୁଁ ତା ରୂପ ରାଶି
—ପୂଲକେ ଭାସେ ।

ବରଗଡ଼
ତା ୨୦ । ୧ ୪୧
ସକାଳ ଘ ୪ ଣ୍ଟା



# ପାଞ୍ଚ

ନାଚଲା ଆଖି ଆଗେ  ମୋହିନୀ ରୂପ ଧରି
ପାଇବା ପାଇଁ ତାକୁ  ହେଲି ମୁଁ ବାୟା ପରି ।

ଚାହଁଲା ଥରେ ଥରେ  ନଚାଇ ଆଖି ପତା
ହସିଲା ସିନା ଧୀରେ  କହିଲା ନାହିଁ କଥା ।

ରକତ ଜବାଧର  ଉଠିଲା ଯେବେ ଥରି
ପରାଣ ସାରା ମୋର  ପୁଲକେ ଗଲା ଭରି ।

ପାଗଳ ପରି ଧାଇଁ  ଗଲି ମୁଁ ତାର କତି
ପାଇବା ଆଶା ମୋର  ହେଲା ଗୋ ବଳବତୀ ।

ହସିଲା ସେ ତ ପୁଣି  ତଳକୁ ପୋତି ମଥା
କପଞ୍ଚ୍ କଣ୍ଠି ସ୍ୱରେ  କହିଲା ପଦେ କଥା—

'ନ ଆସ ମୋର କତି  ରହ ଗୋ ରହ ଦୂରେ
ପାଇବ ଯଦି ମୋତେ  ଚାହଁ ଗୋ ପ୍ରାଣ ପୁରେ' ।

ପାଗଳ ହେଲି ମୁହିଁ  ଶୁଣିଲି ନାହିଁ କଥା
ପ୍ରସାରି ଦେଲି ବାହୁ  ଧରିବି ଅଙ୍ଗଲତା ।

ବନ୍ଧୁର ବର୍ଷ ପରେ
କୁହୁକ ପର କାହିଁ
ପଡ଼ିଲି ଯେବେ ତଳେ
ଗଲା ସେ ଅପସରି ।

ପଡ଼ିଲି କଣ୍ଟଡ଼ ମୁଁ
ହସିଲା ବାସ୍ତବତା
ବନ୍ଧୁର ଧର୍ଷ ପେର
ଅଙ୍ଗୁଳି ଠାରି ମୋରେ ।

ବରଗଡ଼
ତା ୨୧ । ୧ । ୮୧
ସକାଳ ଘ ୫ ଣ୍ଟା



# ଛୁଅଁ

ଅଜଣା ଅତିଥି ହେ !   ଆସିଲ ଯେବେ ତୁମେ
ସୁଦୂର ପଥ ବାହି   ମୋର ଏ ମରୁଭୂମେ ।
ତୁମରି ପରଶରେ   ବହିଲା ବାରି ଧାର,
ପୁଲକ ପ୍ରବାହରେ   ପୂରିଉ ପ୍ରାଣ ସାର ।
ନିରାଟ ମରୁଭୂମେ   ଫୁଟିଲା ତରୁ ଫୁଲ,
ବିରାଟ ଶୂନ୍ୟ ପୁରେ   ଉଠିଲା ହାସ୍ୟ ରୋଳ ।
ନୀରବ ନୀପ ମୂଳେ   ଶୁଭିଲା ବଂଶୀ ସ୍ୱନ
ପରାଣ ରାଧା ମୋର   ହେଲା ଗୋ ଛନ ଛନ,
ମାନିଲା ନାହିଁ ବାଧା   ଗଲା ସେ ଧାଇଁ ଧାଇଁ,
ତୁମରି ସାଥେ ପ୍ରିୟ !   ମିଳିତ ହେବା ପାଇଁ ।
ଧାଇଁଲା ସିନା ଖାଲି   ପାରିଲା ନାହିଁ ଧରି,
ପଳେଇ ଗଲ ତୁମେ   ଡାଆଣୀ ଆଲୋ ପରି ।
କହିଲ 'ଧାଅଁ ନାହିଁ   ପାଗଳ ପରି ଦୂରେ,
ପାଇବ ଯଦି ମୋତେ   ଖୋଜ ହେ ପ୍ରାଣ ପୁରେ ।'

ଦେବଗଡ଼
ତା ୨ । ୨ । ୪୧
ସକାଳ ଘ ୫ ଟା



# ସାତ

ତୁମର ମୁରଲି ମୋ ହୃଦ ପୁରେ
ବାଜୁଛି ସଦା ହେ ! ମୋହନ ସୁରେ
ତୁମର ଇଙ୍ଗିତେ ଅମରଗାନ
ମୁଖର କରେ ମୋ ମୂକ ପରାଣ
ତୁମର ସଙ୍ଗୀତ ଗାଇ ହେ,
ପାଗଳ ପରି ମୁଁ ବୁଲୁଛି ସତତ
ଧରା ଧୂଳି ପରେ ଧାଇଁ ହେ ।

ଯେ ବେଶେ ଦେଉଛ ମୋତେ ସଜାଇ
କରେଁ ଅଭିନୟ ସେ ବେଶେ ଯାଇଁ
ନାଚୁ ଅଛି ସିନା ମୁଁ ରଙ୍ଗ ମଞ୍ଚେ
ସୂତ୍ରଧାର ତୁମେ ରହିଛ ପଛେ,
ଯବନିକା ପର ପାରେ ହେ—
ଚାଲିଯିବ ସିନା ତୁମରି ଇଙ୍ଗିତେ
ଅଭିନୟ ସାରି,ବାରେ ହେ ।

ବରଗଡ଼
ତା ୫ । ୨ । ୪୧
ସନ୍ଧ୍ୟାକ ଘ ୭ ଣ୍ଟା



# ଆଠ

ଡାକିଲ ଯେବେ ତୁମେ    ପାରିଲି ନାହିଁ ଜାଣି
ପାରିଲି ନାହିଁ ବୁଝି    ସଂକେତରୁ ତୁମ ବାଣୀ ।

ଭାବିଲି ନିଜ ପଥ    ନିଜେ ମୁଁ ଅନୁସରି
ନିଜେ ମୁଁ ନେବି ବାହି    ନିଜର ପଣ୍ୟ ତରୀ ।

ଗଲି ମୁଁ ଯେବେ ଚାଲି    ଅକୂଳ ପାରାବାରେ
ଦେଖିଲି ଚାରିଦିଗ    ଘୋଟିଛି ଅନ୍ଧକାରେ ।

ଉଇଁଲା କଳା ମେଘ    ବହିଲା ଘୂର୍ଣ୍ଣିବାୟୁ
ତରୀଟି ଦୋଲି ମୋର    ମାନିଲା ନାହିଁ ଆଉ ।

ଉତ୍ତାଳ ବୀଚି ଘାତେ    ନାଚିଲା ଯେବେ ନାଆ
ଡାକିଲି 'ଆସ ସଖା !    ବାରେ ହେ ହୁଅ ସାହା' ।

ନିବିଡ଼ ଅନ୍ଧକାରେ    ଆଲୋକ କ୍ଷୀଣ ରେଖା
ସହସା ଆଖି ଆଗେ    ଆସେ ମୋ ଦେଲା ଦେଖା ।

ତାଣ୍ଡବ ଲୀଳା ଗଲା    ନିମିଷେ ଅପସରି
ଆଲୋକ ତେଜେ ସାରା    ଗଗନ ଗଲା ଭରି ।

ଯେ ପଥ ଦେଖାଇଲ ଅଙ୍ଗୁଳ ତୁମେ ଠାର
ସେ ପଥେ ବାହି ତରୀ ସାଗର ହେଲି ପାର ।

ଗଲା ତ ତ୍ରୁଟି ମୋର ଗରବ ଅଭିମାନ
ବୁଝିଲି ତୁମ ବଳେ ସିନା ମୁଁ ବଳୀୟାନ ।

ବରଗଡ଼
ତା ୬ । ୨ । ୪୧
ସକାଳ ଘ ୭ ଣ୍ଟା



# ନଅ

ଜୀବନ ମରୁଭୂମେ  ସୁଦୂର ପଥବାହି
ଏକାକୀ ଚାଲୁଛି ମୁଁ  କେହି ତ ସାଥି ନାହିଁ ।
ନ ଦିଶେ ରାହା କାହିଁ  ଦେଖଇଁ ଯେନା ଖାଲି
ଘୋଟିଛି ଚାରଦିଗେ  ବିରାଟ ମରୁବାଲି ।
ଶୁଖିଲା କଣ୍ଠ ତାଳୁ  ତୁଟିଲା ମନୁ ବଳ
ହତାଶା ଅନ୍ଧକାରେ  ବୁଡ଼ିଲା ଅନ୍ତସ୍ତଳ ।
ଜୀବନ ଆଶା ଛାଡ଼ି  ପଡ଼ିଲି ଯେବେ ଶୋଇ
ଦେଖିଲି ନଭକୋଣୁ  ଜଳଦ ଆସେ ଉଇଁ ।
ଟକେତ ବରଷିଲା  ଶୀତଳ ବାରି ଧାର
ନବୀନ ଆଶାରେ ମୋ  ପୂରିଲା ପ୍ରାଣ ସାର ।
ନବୀନ ବଳେ ପୁଣି  ଉଠି ମୁଁ ଗଲି ଚାଲି
ହେଲେ ମୁଁ ହେଲି ପାର  ଦୁସ୍ତର ମରୁବାଲି ।
ଦେଖିଲି ମରୁ ପ୍ରାନ୍ତେ  ଛୁଇଁଛି ମରୁ ସୀମା
ନିଖିଳ ମନ ଲୋଭା  ବନର ଶ୍ୟାମଳିମା ।
ବିସ୍ମୟ ପୁଲକରେ  ପଡ଼ିଲା ନଇଁ ମଥା
ବୁଝିବ କେସନେ ମୁଁ  ସୃଷ୍ଟିର ଗୂଢ଼ କଥା ?

ବରଗଡ଼
ତା ୭ । ୨ । ୪୧
ସକାଳ ୭ ଘଣ୍ଟା



# ଦଶ

ରହୁଛ ଗୋ ! ତୁମେ କାହିଁ
କେଉଁ ସୁଦୂରେ
ଗହନ ପୁରେ ।

ତୁମର ବିରହ ବ୍ୟଥା
ବାଜେ ବୁକୁରେ
କାନ୍ଦେ ଆତୁରେ ।

ଦେଖଇଁ ମୂରତି ତବ
ମନ ମୁକୁରେ
ପବଣ ପୂରେ ।

ତୁମର ପାଇଁ ମୋ ହୃଦ
ସତତ ଝୁରେ
ଛୁହଁ ଗୋ ମୋରେ ।

ତୁମର ପରଶ ଲଭେଁ
ମୁଁ ଭବ ଘୋରେ
ସପନ ପୁରେ ।

ବାନ୍ଧିଛ ଗୋ ପ୍ରାଣ ମୋର
ପୀରତି ଡୋରେ
ନିବିଡ଼ ଜୋରେ ।

ବାଜଇ ମୂରଲି ତବ
ମୋହନ ସୁରେ
କଣ୍ଠ ଗୁଞ୍ଜୁରେ ।।

ରହ ଗୋ ରହ ଗୋ ସଦା
ମୋ ପ୍ରାଣ ପୁରେ
ନ ଯାଅ ଦୂରେ ।

ବରଗଡ଼
ତା ୮ । ୨ । ୪୧
ରାତ୍ରି ୧୦ ଘଣ୍ଟା



# ଏଗାର

ସୁଦୂର ଗଗନ ପଥେ
ବଗୃଲିଲ ଢଦେ ଆସିବ ମୁଁ ବୁଲି
ଚଢ଼ି କଳପନା ରଥେ ।

ଉଠିଲା ବିମାନ ମୋର,
ଛି’ଣ୍ଡାଇ ସବୁ ଜ’ଞ୍ଜାଳ ଭରା
ମ’ର୍ତ୍ତ୍ୟର ମାୟା ଡୋର ।

କୋଟି କୋଟି ଗ୍ରହତାରା,
ଦେଖିଲି ଘୂରୁଛି ଯ’ନ୍ତ୍ର ପରାଏ
ବି’ଶ୍ୱ ଜଗତ ସାରା ।

ନିଖିଳ ବି’ଶ୍ୱେ କାହିଁ
ଅଣୁ ଠାରୁ ସାନ ବିଶାଳ ଧରଣୀ
ସ’ନ୍ଧା ପାଇଲି ନାହିଁ ।

ଗଲା ମୋ ଚେତନା ବୁଡ଼ି,
ଅସୀମ ଗଗନେ ହେଲି ପଥ ହରା
ନ ପାରିଲି ଆଉ ଉଡ଼ି ।

ତୁଟିଗଲା ମନୁଁ ବଳ,
ନ ପାରିଲି ଜାଣି କିଏ କାରିଗର
ଚଳାଏ ସୃ’ଷ୍ଟି କଳ ।

ଆଖି ଗଲା ମୋର ବୁଜି,
ସସୀମ ଜ୍ଞାନରେ ଅସୀମ ରହସ୍ୟ
ପାରିବ କେସନେ ବୁଝି ?

ବରଗଡ଼
ତା ୨୭ । ୬ । ୪୧
ସକାଳ ଘ ୭ ଟା



# ବାର୍

ନ ଡାକୁଣୁ ମୁହିଁ  ଆସିଲ ହେ, ତୁମେ
ଅଜଣା ଅତିଥି ପରି
ଆସିଲା ମାତ୍ରକେ  ଚିର ପରିଚିତ
ନେଲ ମୋତେ କୋଳ କରି ।
ତୁମରି ପରଶେ  ମନ ମରୁ ଭୂମେ
ବରଷିଲା ବାରି ଧାରା
ନବୀନ ଆଶାରେ  ଭରି ଉଠିଲା ମୋ
ନିରାଶ ପରାଣ ସାରା ।
ଦେଖିଲି ଚକିତେ  ଅମା ଅନ୍ଧକାର
ଗଲାଣିତ ଅପସରି
ତରୁଣ ଅରୁଣ  ଆସୁଅଛି ଉଇଁ
ଉଷାରାଣୀ କର ଧରି ।
ଶୋଭାର ତପଣୀ  ବସିଅଛି ଅବା
ସରାଟୀ ଗଗନ ପଥେ
ସ୍ୱରଗର ସୁଧା  ଝରି ଆସୁଛି କି
ସତେ ଅବା ଏ ମରତେ ?
ସାରା ଦୁନିଆରେ  ଦେଖିଲି ଲାଗିଛି
ଜରମର କୋଳାହଳ
ଜଡତା ବିଷାଦ  ଗଲା ମୋ ଉଭେଇ
ପାଇଲି ନବୀନ ବଳ ।

ତୁମରି ଆଦେଶେ    କରମ ସାଗରେ
ଭସାଇ ଦେଲ ମୋ ତରୀ
ଯେତକ ଦେଇଛ    ସେଇ ବଳେ ସିନା
ବାହୁବ ଆହୁଲା ଧରି ?
କର୍ଣ୍ଣଧାର ତୁମେ    ବସିଅଛ ପରା
ପଥ ଦେଖାଇବା ପାଇଁ
ଯେ ପଥେ ଚଳାଇ    ନେବ ମୋର ତରୀ
ସେ ପଥେ ଯିବ ମୁଁ ବାହୁ ।

ବରଗଡ଼
ତା ୧୮ । ୭ । ୪୧
ସକାଳ ଘ ୭ ଟା

# ଢେଉ

ରଜନୀ ସଖୀଗୋ ! କହ,
ତୋହ ପାଇଁ କିଆଁ ପରାଣ ମୋହର
କା'ନ୍ଦଇ ଅହ ରହ ।

ଦିବସ ଆଲୋକ ଭାତି
ଝୁଲିଯାଇ ଦିଏ ନୟନ ମୋହର
ପରାଣ ଉଠଇ ତାତି ।

ସ୍ନିଗ୍ଧ ରୂପଟି ତୋର
ନିଏ ଆକର୍ଷି ମୋ ନୟନ ମନ
ଲଗାଇ ପୀରତି ଡୋର ।

ତୋହର ସ୍ନିଗ୍ଧ କୋଳେ
ଟାଣି ନେଉ ମୋର କ୍ଲାନ୍ତ ଶରୀର
ଆହା କି ପୀରତି ଭୋଳେ ।

ସ୍ନିଗ୍ଧ ପରଶେ ତୋର
ବାସ୍ତବତାର ଶତ କଷାଘାତ
କଷ୍ଟ ହୁଏ ମୋ ଦୂର ।

ବଜାଇ ମୋହନ ବଂଶୀ
କି କୁହୁକ ବଳେ ସପନ ପୁରକେ
ନେଉ ମୋତେ ଆକର୍ଷି ?

ସୁନ୍ଦର ତୋର ଶିରେ
ହୀରକର ଜ୍ୟୋତ — କୋଟି ଗ୍ରହତାରା
ଝଲସଇ କି ରତ୍ନରେ !

ରୂପଟି ସିନା ତୋ କଳା
କିନ୍ତୁ' ରୂପସି ! — ଅ'ନ୍ତର ତୋର
ସେତେନ୍ଦୁ ଢଉଦେ ଭସ୍ମ ।

ତେଣୁ ମୋତେ ଭଲ ଲାଗେ
ଦୀବାଷଣୀ ରୂପ— — ଝଲକ ନ ଲୋଡେ
ତୋହର ପରଶ ମାଗେ ।

ଦେବଗଡ଼
୬। ୧ । ୩ । ୪୧
ପଞ୍ଚମୀ ଓ ପାଦାନ୍ତ



# ଚଉଦ

କଳା ମୋତେ ଭଲ ଲାଗେ
କଳା ଘନ ଘେର କମନୀୟ କାନ୍ତି
ଦେଖେଁ ଯେବେ ଆଖି ଆଗେ ।
କଳା ଜଳଧର ଅଙ୍ଗେ,
କଳା କଉତୁକୀ ରୂପଟି ତାହାର
ଫୁଟି ଉଠେ କେତେ ରଙ୍ଗେ ।
କଳା ଯାମିନୀର କୋଳେ
କ୍ଳା'ନ୍ତ ଆଖି ମୋ ଢୁଳାଇ ପଡଇ
ତାହାର ପୀରତ ଦୋଳେ ।
ରୂପଟି ଯିବା ତା କଳା
ଅନ୍ତ'ର ତାର ସେନେହ ସୋହାଗ
ସଉନ୍ଦର୍ଯ୍ୟ ସଦା ଭରା ।
କଳା ତେଣୁ ଭଲ ଲାଗେ
କଳା ଦରଶନେ ଅ'ନ୍ତରେ ମୋର
ଶା'ନ୍ତ ଭାବନା ଜାଗେ ।

ବରଗଡ଼
ରା ୨ । ୩ । ୪୧
ଦ୍ଧ ଓ ଘ ୮ ଣ୍ଟା



# ପନ୍ଦର

କଏ ସେ ଗୋ ତୁମେ
          ଲୁଚି ରହିଥିଲ
                    ଅନ୍ତର ପୁରେ ମମ
ଓଢଣା ଉଢାଳେ
          ମୁଖଟି ଘୋଡାଇ
                    ପଲ୍ଲୀ ବଧୁଟି ସମ ?
ଆସିଲ ଗୋ ଯେବେ
          ନବ ବଧୂ ମୋର
                    ନୂପୁର ବଜାଇ ପାଦେ
ଉଲ୍ଲାସେ ଥରି
          ଉଠିଲା ମୋ ହୃଦ
                    ସେଇ ରୁଣୁ ଝୁଣୁ ନାଦେ ।
ଦେଖି ଯେବେ ଫେରି
          ଲଜ୍ଜା ପାଇଲ
                    ବଦନୁ ଓଢଣା ତବ
ବଧୁଲି ଅଧରେ
          ଉଠିଲା ଗୋ ଫୁଟି
                    ମୃଦୁ ହାସ୍ୟ ଅଭିନବ ।
ଅଞ୍ଚଳେ ତବ
          ପୋଛିଦେଲ ମୋର
                    ନୟନରୁ ବାରି ଧାରା

ନବ ଅନୁରାଗେ
ଭରି ଉଠିଲା ମୋ
ଶ୍ରାନ୍ତ ହୃଦୟ ସାରା ।
ତୁମରି ପରଶେ
ଭୁଲିଗଲି ମୁହିଁ
ସକଳ ବିରହ ବ୍ୟଥା ।
ଢୁଳାଇ ପଡ଼ିଲି
ତୁମରି କୋମଳ
ବକ୍ଷେ ରଖି ଗୋ ମଥା !
ବିଶ୍ୱର ସାର
ରୂପସି ଗୋ ! ମୋରେ
ନେଲ ଯେବେ କୋଳ କରି
ଦିବ୍ୟ ପୁଲକେ
ଅନ୍ତର ମୋର
ସହସା ଗଲା ଗୋ ଭରି ।

ବରଗଡ଼
ତା ୭ । ୩ । ୪୧
ରାତ୍ର ୧୨ ଘଣ୍ଟା



# ଶୋକ

"କହ ଗୋ କହ ସଖି ।    କାହାର ପାଇଁ ଆଜି
ବସିଛନ୍ତି କୁଞ୍ଜ ଦ୍ୱାରେ    ମୋହିନୀ ବେଶ ସାଜି ?
କା ପାଇଁ ନୟନରୁ    ନିଗିଡ଼େ ନୀର ଧାର
ଲିଭାଇ ଦିଏ ସଖି !    କଜ୍ଜଳ କଳା ଗାର ?
କାହାର ପଥ ଚାହିଁ    ବସିଛନ୍ତି ଆଜି ଏକା
ଆସିବ ସେ କି ଫେରି ଦେଇ ଯେ ଥିଲା ଦେଖା ?
ଶୁଖିବ ସିନା ସଖି !    ଗଭୀର ଫୁଲ କଢ଼ି
କୋମଳ ପାଖୁଡ଼ା ଗୋ    ପଡ଼ିବ ସିନା ଝଡ଼ି ?
ବିରହ ବେଦନାରେ    ଫାଟିବ ସିନା ଛାତି
ଦୁଆରେ ଉଜାଗରେ    ପାହିବ ସିନା ରାତି ?
ଫେରିବ ନାହିଁ ସେତ    ଗଲାଣି ଯିଏ ଚାଲି
ଲାଗିଲା ସିନା ସଖି ।    କଳଙ୍କ ଦାଗ ଖାଲି ?"

× × × ×

"ଲାଗୁ ଗୋ ଲାଗୁ ଯେତେ   କଳଙ୍କ କାଳି ଦାଗ
ବଢ଼ିବ ଯେତେ ମୋର   ତା ପ୍ରତି ଅନୁରାଗ ।
ତା ପାଇଁ ତେଜିବ ଗୋ   ସକଳ ଅଭିମାନ
ତା ପ୍ରେମ ଗୀତେ ଦେବ   ନିଜକୁ ବଳିଦାନ ।
ତା ପଥ ଅନୁସରି   ଯିବି ମୁଁ ପଥ ବାନ୍ଧି
ତା ବିନା ସିନା ମୋର   ଅପର ଗତି ନାହିଁ ।
ଲାଗିବ ଲାଗୁ ଯେତେ   କଳଙ୍କ କାଳି ଗାର
ତା ଲାଗି ସିନା ମୋର   ଆଜି ଏ ଅଭିସାର ।"

ବରଗଡ଼
ତା ୧୩ । ୩ । ୧୯୭୨
ରାତ୍ରି ଘ ୧୦ ଟା



# ସତର

ସୁନୀଳ ଗଗନ ପଥେ ରଜତ ଶଶି
ଢାଳଇ ଜ୍ୟୋତ୍ସ୍ନାରାଶି ମଧୁରେ ହସି

ସରଗର ସୁଧା ଧାରା ପଡେ କି ଝରି
ଜଗତ ସାରାଟି ପ୍ରେମେ ପାଗଳ କରି ?

ପ୍ରେମେ ହସେ ତରୁଲତା ହସେ ରଜନୀ
ପ୍ରେମ ସାଗରେ କି ଭାସେ ପ୍ରେମ ତରଣୀ ?

କୁସୁମ ହସଇ ନୂଆ ପତର କୋଳେ
ମଳୟ ପବନ ନାଚେ ପୀରତ ଭୋଳେ ?

ଭାସିଆସେ ଦୂରୁଁ କାର ମୂରଲୀ ସ୍ୱନ
ପ୍ରେମିକ ପ୍ରେମିକା ପ୍ରାଣ କରେ ଉଚ୍ଛନ୍ନ ?

ଆନନ୍ଦ ଲହରୀ ଖେଳେ ପ୍ରେମ ସାଗରେ
ପକୃତ ରାଣୀ କି ହସେ ସୋହାଗ ଭରେ ?

ଏତେ ଆନନ୍ଦରେ କିଆଁ ନ ଲାଗେ ସୁଖ
ବରହ ବେଦନା ବୁକେ ଦଏ କି ଦୁଃଖ ?

ଚକ୍ରବାକ ଚକ୍ରବାକୀ ମରନ୍ତି ଝୁରି
ଅନ୍ତରେ ବାଜଇ ଯେଣୁ ବରହ ଛୁରି ।

ବାଧି ତ ନ ଥିଲା ତଳେ          ପ୍ରଚଣ୍ଡ ଖରା
ମିଳନ ଆନନ୍ଦେ ପ୍ରାଣ          ହେଲାଟି ଭରା ?

ପାଶେ ଯେବେ ଥାଅ ମୋର          ପରାଣ ପ୍ରିୟା
ପୁଲକ ପ୍ରବାହେ ନାଚ          ଉଠେ ମୋ ହିଆ ।

ତୁମରି ପରଶେ ଉଠେ          ପରାଣ ହସି
ଅମା ରଜନୀରେ ଦେଖେଁ          ମୁଁ ରାକା ଶଶୀ ।

ପାଶେ ମୋର ଥାଅ ପ୍ରିୟେ ! ଯେବେ ଗୋ ତୁମେ
ସରଗ ସୁଷମା ଝରେ          ଏ ମରୁ ଭୂମେ ।

ବରଗଡ଼
ତା ୧୪ । ୩ । ୪୧
ରାତ୍ର ୪ ଘଣ୍ଟା
ଦୋଳ ପୂର୍ଣ୍ଣିମା



# ଅଠର

ଆସିଲ ହେ ପ୍ରିୟ ! ଯେବେ ଏ ଦୀନ ସଦନେ
ଚଢ଼ି ତବ ସ୍ୱର୍ଣ୍ଣ ରଥ ଗୋଧୂଳି ଲଗନେ ।
ମିଳନ ପୁଲକେ ପ୍ରାଣ ଉଠିଲା ମୋ ଭରି
ନେଲ ଯେବେ ବାହୁ ପାଶେ ଆଲିଙ୍ଗନ କରି ।
କପୋଳେ ଉଠିଲା ଫୁଟି ଲଜ୍ଜା ପାଟଳିମା
ଛୁଇଁଲ ଅଧରେ ଯେବେ ମୋ ଅଧର ସୀମା ।
ଶୁଣାଇଲ କାନେ କେତେ ମିଳନ ସଙ୍ଗୀତ
ପୁଲକରେ ଅଙ୍ଗ ମୋର ହେଲା କଣ୍ଟକିତ ।
ସଁପି ଦେଲି ପଦେ ତବ ସର୍ବସ୍ୱଟି ମୋର
ଭକ୍ତି ପ୍ରାଣେ ହେଲି ମୁଁ ଗୋ ଆନନ୍ଦେ ବିଭୋର ।
ସହସା ମୋ ସୁଖ ସ୍ୱପ୍ନ ଗଲା ସିନା ଭାଙ୍ଗି
କହିଲ ଗୋ ଯେବେ ପ୍ରିୟ—"ଆସୁଛି ମୁଁ ଆଜି ।"
ବିଷାଦ କାଳିମା ଗଣ୍ଡେ ଦେଲା ମୋର ଦେଖା
ଅଧରୁଁ ମୋ ଗଲା ଲିଭି ମୃଦୁ ହାସ୍ୟ ରେଖା ।
ଅଭିମାନେ କହିଲି ମୁଁ "ହେ ପ୍ରିୟ ନିଷ୍ଠୁର
ଛିଣ୍ଡାଇଲ କିପାଁ ନିଜେ ବାନ୍ଧି ପ୍ରେମ ଡୋର ?"
କହିଲ ଆଶ୍ୱାସି ମୋରେ "ତେଜ ବୃଥା ଖେଦ
ଛିଣ୍ଡାଇ ପାରେକି ପ୍ରାଣ—ବନ୍ଧନ ବିଚ୍ଛେଦ ?"
ଅଧରେ ଦେଲ ଗୋ ଯେବେ ବିଦାୟ ଚୁମ୍ବନ
ଗଲ ଯେବେ ଦେଇ ମୋରେ ଶେଷ ଆଲିଙ୍ଗନ ।

ଝରିଗଲା ନୟନୁଁ ମୋ ଶେଷ ଜ୍ୟୋତ ଧାର
ଦେଖିଲି ମୁଁ ଆସେ ଘୋଟି ଘନ ଅନ୍ଧକାର ।
ଭାସିଲା ଅନ୍ତେ ମୋ କାନେ ଦୂର ବଂଶୀ ସ୍ୱନ
"ଭରହେ ଛୁଟେ କି କେବେ ହୃଦୟ ବନ୍ଧନ ?"

ବରଗଡ଼
ତା ୧୯ । ୩ । ୪୧
ଘଭ ର ୭ ଣା



# ଉଣେଇଶ

କୁସୁମ କଳିର କୋମଳ ପାଖୁଡ଼ା
ମେଲାଇ ଦିଏ କେ ଧୀରେ,
ପୂରାଇ ଦିଏ କେ ଅନ୍ତର ତାର
ମଧୁଭରା ସୁରଭିରେ ?
ଇଙ୍ଗିତ କାର କୁସୁମ ପାଖୁଡ଼ା
ଝୁଣ୍ଟି ଗୋ ପଡ଼ଇ ଝରି
ସକଳ ସୁଷମା ମଧୁ ସଉରଭ
କ୍ରମେ ଶେଷେ ଯାଏ ଗୋ ମରି ?
କା ଆଦେଶେ ପୁଣି ତା ସମାଧି ତଳେ
ଜନମେ ଗୋ ନୂଆ ଫଳ
ଧ୍ୱଂସ ଗରଭେ ସୃଷ୍ଟିର ବୀଜ
କାହାର ଏ କଉଶଳ ?

ଦେଉଗାଁ
ତା ୨୫ । ୩ । ୪୨
ସକାଳ ଘ ୭ ଟା



# ଜୋଡ଼ିଏ

ଦୀର୍ଘ ବିରହ ନିଶା ହେଲା ଯେବେ ଶେଷ
ଆସିଲ ହେ ପ୍ରିୟ ମୋର ଧରି ନୂଆ ବେଶ ।

ପୋଛି ଦେଇ ବଦନୁଁ ମୋ ବିଷାଦ କାଳିମା
ଚୁମ୍ବ ଦେଇ ଫୁଟାଇଲ ଗଣ୍ଡେ ପାଟଳିମା ।

ମଳୟ ମର୍ମର ଛଳେ କହିଲ କି କଥା
ଛୁଟିଗଲା ନିମିଷେ ମୋ ଅନ୍ତର ବ୍ୟଥା ।

ବିପୁଳ ପୁଲକେ ପ୍ରାଣ ଉଠିଲା ମୋ ହସି
ନେଲ ଯେବେ ପ୍ରିୟ ମୋରେ ପାଶେ ଆକର୍ଷି ।

ନୀହାର କଣିକା ଛଳେ ନୟନେ ମୋହର
ଅଭିମାନେ ଅଶ୍ରୁ ଯେବେ ହେଲା ଝର ଝର—

ପୋଛି ଦେଇ କର ଯୁଗେ ମୋ ବେନି ନୟନ
ସୋହାଗେ ଦେଲ ଗୋ ମୋରେ ଗାଢ଼ ଆଲିଙ୍ଗନ ।

କହିଲ ଗୋ ଚୁପେ ଚୁପେ ଗଣ୍ଡେ ରଖି ମୁଖ
"ନ ଥିଲେ ବିରହ କାହିଁ ମିଳନର ସୁଖ ।"

ସହସା ଉଠିଲା ଫୁଟି ମୋ ମାନସ ଦଳ
ଭୁଲି ସତ୍ତା ବକ୍ଷେ ତବ ପଡ଼ିଲି ମୁଁ ତଳ
ଅର୍ଦ୍ଧ ନିମିଳିତ ନେତ୍ରେ କହିଲି "ହେ ପ୍ରିୟ
ହିଁପି ଦେଇ ସବୁ ମୋର ନିଅ ସଖା ନିଅ।"

ଆନନ୍ଦାଶ୍ରୁ ନୀରେ ହେଲା ମୋ ନୟନ ସିକ୍ତ
ଲଭିଲି ମୁଁ ପୂର୍ଣ୍ଣ ସୁଖ ହେଲି ଯେବେ ରିକ୍ତ।
ଅଧରେ ଦେଲ ଗୋ ଯେବେ ମିଳନ ଚୁମ୍ବନ
ପ୍ରେମ ଭରେ କଲ ମୋରେ ଗାଢ ଆଲିଙ୍ଗନ
ନୟନେ ଦେଖିଲି ଦିବ୍ୟ ଆଲୋକର ଶିଖା
ଦେଲ ଯେବେ ପ୍ରିୟ ମୋରେ ପ୍ରୀତି ମନ୍ତ୍ର ଦୀକ୍ଷା।

ଧରଗଡ଼
ତା ୩୦।୩।୪୧
ସକାଳ ଘ ୭ ଟା



# ଏକୋଇଶ

"ତାହାର ଦରଦ ବ୍ୟଥା
ବାଜେ ଛଲୋ ! ବୁକେ
'ଲୁହ' ଛଳେ 'ଉହୁ' ବାଣୀ
ଉଚ୍ଚାରୁ ତୁ ମୁଖେ ?

ବସି ଅନ୍ଧକାର କୁଞ୍ଜେ
କାହା ପଥ ଚାହିଁ
ଉଜାଗରେ ସାରା ନିଶି
ଦେଉ ତୁ ବତାଇ !

ପଶି ମରମରେ କମ୍ପା
ପଡୁ ଲୋ ଚମକି
ଗଲାଣି ଯେ ଥରେ ଗୃହ
ଆଉ ଫେରିବ କି ?

ବ୍ୟଥା ଭରା ବପଞ୍ଜରୁ
ବାଇ କ୍ଷଣେ ତନ
ଅକାରଣେ ଝୁରି କମ୍ପା
ତନୁ କରୁ କ୍ଷୀଣ ?"

× × × ×

ନ ଆସୁ ପଛକେ ପ୍ରିୟ,
ତାହା ପଥ ଚାହିଁ
କ୍ଷଣେ ତନ ଭୁଲିବ ମୁଁ
ତା ସଙ୍ଗୀତ ଗାଇ,

ପ୍ରତୀକ୍ଷାରେ ତାହା ଲାଗି
ଥିବ ବସି କ୍ଷଣ
ଘରହେ ଫୁଟେ କି କେବେ
ଅଭେଦ ପୀରତ ?

ବସନ୍ତ ଆସିବ ଯେବେ
ତା ବାରତା ନେଇ
ହୃଦୟ କପାଟ ମୋର
ଦେବ ସିନା ଫେଇ ।

ସ୍ୱେଚ୍ଛାରେ କରିଛି ଯାରେ
ଏ ହୃଦୟ ଦାନ
ତାହା ଠାରେ କହ କିବା
ଲଜ୍ଜା ଅଭିମାନ ?

ମରନ୍ତେ ଫାଟିବ ଯେବେ
ଫାଟୁ ମୋର ଛାତି ।
ସ୍ମୃତି ତାହାର ଖାଲି
ମୋର ଚିର ସାଥି ।

ପ୍ରାଣ ଥିବା ଯାଏ ତାର
ଆଗମନୀ ଗୀତି
ଗାଉଥିବ ଯୁଗେ ଯୁଗେ
ଦିବା ରାତି ନିତି ।”

ବରଗଡ଼
ତା ୧ । ୮ । ୪୧
ସକାଳ ଘ ୫ ଟା



# ବାଇଶି

ଫାଲ୍‌ଗୁଣି ନିଶା ଯେବେ        ଆସୁଥିଲା ପାଖ
ଧବଳ ଜ୍ୟୋତ୍ସ୍ନା ଜଳେ        ତନୁ ଅବଗାହି,
ଫୁଟାଇ ମଧୁର ହସ        ସରସ ଅଧରେ
ଦର ବିକଶିତ ମଲ୍ଲି        କୁସୁମର ଛଳେ
ଆସିଲା ଗୋ ଯେବେ ସେହି        ସରଗ ରୂପସୀ
ବିଜନ କୁଟୀରେ ମମ        ଅମିୟ ବରଷି—
ପଶି ମରମରେ କିବା        କହିଲା ମୋ କାନେ
"ଦେଖ ପ୍ରିୟ ! ଆସିଛି ମୁଁ        ତୁମରି ସଂଧାନେ,
ତୁମରି ଉଦ୍ଦେଶେ ମୋର        ଏହି ଅଭିସାର
ନେଉ ପ୍ରିୟ ନେଉ ମୋର        ପ୍ରୀତି ଉପହାର !"
ନିଷ୍ଠୁର ମୁଁ ନ ବୁଝିଲି        ତା ପରାଣ ବ୍ୟଥା
ଘୃଣାଭରେ ନ କହିଲି        ତାରେ ପଦେ କଥା
ଅଭିମାନେ ଗଲା ଫେରି        ରୁଦ୍ଧ ଆବେଗରେ
ବାଷ୍ପ ବିଜଡ଼ିତ କଣ୍ଠେ        କହିଗଲା ଥରେ—
"ନ ଭାବ ନିଷ୍ଠୁର ! ମୋତେ        ମୁହିଁ କଳଙ୍କିନୀ
ଆସିଥିଲି ଲାଳସାରେ        ହୋଇ ପାଗଳିନୀ;

ହୃଦୟ ଝରିଗଲା ସ୍ୱଚ୍ଛ ମୃତ ପ୍ରେମଧାର
ଭୁଲାଇ ମୁଁ ରଖିଥିଲି ଏଇ ଅଭିସାର ।
ଭୁଲଇ ଏ ପ୍ରେମଧାରା ପବନ ଶାଶ୍ୱତ
ମନୁଷ୍ୟ ଦେବତା ହୁଏ ଲଭି ଯା ମହତ୍ତ୍ୱ ।"
ଗଲା ରୁଚି ସହସା ମୋ ଗରବର ମୋହ
ଭାବାବେଶେ ଡାକିଲି ମୁଁ 'ରୁହ ପ୍ରିୟେ ରୁହ' ।
ସକଳ ପ୍ରୟାସ ମୋର ହେଲା ବୃଥା ଖାଲି
ନ ଶୁଣିଲା କଥା ଆଜ ଗଲା ସେ ଚାଲି ।
ଅନୁଶୋଚନାରେ ପ୍ରାଣେ ଉଠିଲା ମୋ କୋହ
ଶେଷ ମୋର ଛନ୍ଦାଇଲା ନୟନର ଲୁହ ।

ବରଗଡ଼
ତା ୧୮ । ୪ । ୪୧
ସକାଳ ୪ ଘଣ୍ଟାରେ



# ଚେତଇଣ

'ଫୁଟାଇ ଦେଲା ଗୋ କିଏ ତୋ ଅଧରେ ହସ
ପୁଲକି ଉଠିଲା ତନୁ ଲଭି କା ପରଶ ?
କାହାର ମୂରଲି ଧ୍ୱନି ବାଜିଲା କି କାନେ
ବହିଲା ପ୍ରେମର ବନ୍ୟା ତୋ ନୀରସ ପ୍ରାଣେ ?

ଲଜ୍ଜାନତା ଫୁଲ ବଧ ହେଲୁ ଗୋ ଉଚ୍ଛନ୍ନ
ଛୁଟିଗଲା ଅଙ୍ଗୁ ତୋର ଲଜ୍ଜା ଆବରଣ ।
ଉନ୍ମୁକ୍ତ ବଦନ ଶଶି ଉଠିଲା ବିକଶି
ବହିଲା ମଳୟ ଯେବେ ତୋ ତନୁ ପରଶି ।

ଅନ୍ତର ନିଗିଡ଼ା ତୋର ସଉରଭ ମଧୁ
କା ଉଦ୍ଦେଶେ ଦେଲୁ ଢାଳି ଅୟି ଫୁଲ ବଧୂ ?
ସଉରଭେ ମତ୍ତ ହୋଇ ଲମ୍ପଟି ଭ୍ରମର
କପଟ ସୋହାଗେ ଯେବେ ଧରିଲା ତୋ କର ।

ସତୀରାଣୀ ବୃନ୍ତ ଉପରେ ତାରେ ବାଧା ଦେଇ
ମଳୟ ପରଶେ ବେଗେ ଗଲୁ ଗୋ ପଛେଇ ।

କହିଲି ସେ ଗୃହବାଣୀ ଯେତେକ ମନାଇ
ଭାଟେ ତଳ କହିଲୁ ତୁ "ନାହିଁ ନାହିଁ ନାହିଁ ।
ଭାଇସାର ତୃପ୍ତି ଲାଗି ନୁହଇ ତ ସୃଷ୍ଟି—
ରୂପ ସଉରଭ ମୋର, ଦେଇ ଏବ୍ୟ ଦୃଷ୍ଟି—

ଦେଖ ହେ, ଅନ୍ତର ଯାର ପ୍ରେମେ ତଳ ତଳ
ପ୍ରକୃତରେ ସେହି ସିନା ପ୍ରେମିକ କେବଳ ?

ବସନ୍ତ ଆସିବ ଯେବେ ତା ବାରତା ନେଇ
ହୃଦୟ କପାଟ ମୋର ଦେବ ସିନା ଫେଇ

ରୂପ ସଉରଭ ମୋର ଉଠିବ ଗୋ ଫଟି
ତା ଚରଣ ପ୍ରାନ୍ତେ ଯେବେ ପଡ଼ିବ ମୁଁ ଲୁଟି ।
ସଁପି ଦେବ ସବୁ ମୋର ତାହାର ଉଦ୍ଦେଶେ
ତାହା ଲାଗି ସିନା ଝଡ଼ି ଯିବ ଅବଶେଷେ

ସେ ମରଣ ହେବ ମୋର ସ୍ୱରଗ ସମାନ
ପ୍ରେମ ପାଇଁ ଦେବ ଯେବେ ଆତ୍ମବଳୀ ଦାନ ।"

ବରଗଡ଼
ତା ୨୦ । ୪ । ୪୧
ସକାଳ ଘ ୭ ଟା



# ଚବିଶ

ଝଣନ ମୋ କୁଞ୍ଜ ଦ୍ୱାରେ    ନୂପୁର ଝଙ୍କଣ
ସୂଚାଇ ଦେଲା ହେ ପ୍ରିୟ !    ତବ ଆଗମନ ।
ଦୀର୍ଘ ପ୍ରତୀକ୍ଷାର ମୋର    ହେଲା ଯିବା ଶେଷ
ଆସିଲ ହେ ପ୍ରିୟ ଯେବେ    ଧରି ଗୁରୁବେଶ ।
ନ ପାରିଲି ଚାହିଁ, ନଇଁ    ପଡ଼ିଲା ମୋ ମଥା
ଲୁବ୍ଧ ଆବେଗରେ କଣ୍ଠ    ନ ପାରିଲି କଥା !
ଭାବା-ବେଶେ ପୁଲକାଇ    ତନୁ, ଲୁହଧାର—
ନୟନୁଁ ନଭାଇ ଦେଲା    ମୋ କଜ୍ଜଳ ଗାର ।
କଣ୍ଟକିତ ଅଙ୍ଗୁ ସ୍ୱେଦ    ବାରି ଗଲା ବହି
ଇଚ୍ଛା ସତ୍ତ୍ୱେ ନ ପାରିଲି    ପଦେ କଥା କହି ।
ମୋର ଏଣୁ ଜଡ ଭାବ    ଗଲା ଯେବେ ଚାଲି
ଦେଖିଲି ମୁଁ କୁଞ୍ଜ ମୋର    ପଡ଼ିଛି ତ ଖାଲି ।
ପାଇଲ କି ପ୍ରିୟତମ    ପ୍ରାଣେ ଗୁରୁ ବ୍ୟଥା
ଉଦାସୀନା ଭାବ ମୋରେ    ଦେଖି ନୀରବତା ?

ଘୋଟିଲା ଅନ୍ତରେ ମୋର          ନିଶା ଅନ୍ଧାର
ଭାବିଲି ମୁଁ ବୃଥା ହେଲା          ସେତା ଅଭିସାର
ବ୍ୟଥିତ ଅନ୍ତରେ ଯେବେ          ଭାଷିଲି ମୁଁ ବାଣୀ
"ଅନ୍ତର୍ଯ୍ୟାମୀ, ନ ପାରିଲ          କିବା ତୁମେ ଜାଣି—
ଅନ୍ତରର ଭାବ ମୋର ? ପ୍ରିୟ, କାହା ପାଇଁ ?
ପ୍ରତୀକ୍ଷାରେ ଥିଲି ବସି          କାହା ପଥ ଚାହିଁ ?"
ପଦ ଆହୁଆଳୁ ପ୍ରିୟ          କରି ରସିକତା
କହିଲ କି ପଦେ କଥା          ଭାଙ୍ଗି ନୀରବତା—
'ତୋ ପାଇଁ ଆସିଛି ପ୍ରିୟ          ଦୀର୍ଘ ପଥ ବାହି
ବୁଝିଛି ତୋ ଭାବ ହେଣୁ          ମୁହିଁ ଭାବଗ୍ରାହୀ ?'
ସକଳ ଜଡତା ତ୍ୟାଜି          ଗଲା ମୋର ତୁଟି
ତୁମରି ଚରଣ ପ୍ରାନ୍ତେ          ପଡ଼ିଲି ମୁଁ ଲୁଟି ।
ସୋହାଗରେ ପ୍ରିୟ          ଯେବେ କୋଳ କରି
ସ୍ବର୍ଗୀୟ ଆନନ୍ଦେ ପ୍ରାଣ          ଉଠେଲା ମୋ ଭରି ।
ବକ୍ଷେ ତବ ରଖି ଶିର          ପଡ଼ିଲି ଢୁଲାଇ
କହିଲି "ହେ ପ୍ରିୟ ଆଉ          କିଛି ଲୋଡ଼ା ନାହିଁ ।"

ଢରଗଡ
ତା ୨୩ । ୪ । ୪୧
ସକାଳ ୭ ଘଣ୍ଟା



# ପରିଶ

ଝର ତୁଚ୍ଛ ସମ୍ରାଟର ସ୍ୱର୍ଣ୍ଣ ସିଂହାସନ
ପ୍ରେମ ସିଂହାସନେ କିବା କଲ ଆରୋହଣ ?
ଅକୁଣ୍ଠିତେ ଗଲ ତେଜି ବିଶାଳ ଧରଣୀ,
ମାନବକତାର ମହା ବନ୍ଧନ ସେ ମଣି ।
ମାଟିର ସାମ୍ରାଜ୍ୟ ସତେ ଲାଗିଲା କି ତୁଚ୍ଛ,
ପ୍ରିୟା-ହୃଦ-ସ୍ୱରାଜ୍ୟ ତେଣୁ ହେଲ ଅଭିଷିକ୍ତ ?
ସ୍ୱର୍ଗୀୟ ସୁଖର କିବା ପାଇଲ ସନ୍ଧାନ,
ପ୍ରେମିକାର ପ୍ରେମ ରାଜ୍ୟେ ଉଡ଼ାଇ ନିଶାଣ ?
ଦେଖି ମୃଦୁ ହାସ୍ୟ ରେଖା ପ୍ରେମିକା ଅଧରେ
ପ୍ରେମର ପୁଲକ ଧାରା ବହିଲା କି ଖରେ—
ଅନ୍ତର ପ୍ରଦେଶେ ତବ, ଫାଲ୍‌ଗୁ ଧାରା ପରି,
ଅବଲମ୍ବି ନେଲ ତେଣୁ ପ୍ରେମ ପଥ ବରି ?
ଅଶାନ୍ତ ମୁକୁଟ ବନ୍ଧ ସମ୍ରାଟର ଶିରେ,
ଝସ୍ମିବାକୁ ଇଚ୍ଛା ତବ ହେଲାନି କି ତିଳେ ?

ପ୍ରେମର ମୁକୁଟ ଯେଣୁ ତର ଶାନ୍ତମୟ,
ପେଖିଲ କି ତେଣୁ ତେଜି ଅପବାଦ ଭୟ ?
ପ୍ରେମର ସନ୍ନ୍ୟାସୀ ବେଶେ ଧରି ପ୍ରିୟା କର
ଜନ୍ମଭୂମି ତେଜି ଗଲ ଦୂର ଦେଶାନ୍ତର—
ନାହିଁ ଯହିଁ ଲୋକାଚାର ବୃଥା ଆଡମ୍ବର
ସ୍ୱଚ୍ଛନ୍ଦେ ବହଇ ଯହିଁ ପ୍ରେମର ନିର୍ଝର—
ପ୍ରେମିକ ପ୍ରେମିକା ପ୍ରାଣେ; ପ୍ରେମର ମନ୍ଦିରେ,
ନାହିଁ ଯହିଁ ଉଚ୍ଚ ନୀଚ ଭେଦ ପଦବୀରେ ।
ଆନନ୍ଦରେ ବସି ତହିଁ ପ୍ରେମ ସିଂହାସନେ
ନିରେଖ ପ୍ରେମର ଜ୍ୟୋତି ପ୍ରେମିକା ନୟନେ ।
ସଫଳ ହେଉ ହେ ତବ ପ୍ରୀତି ଅଭିଯାନ
ଯୁଗେ ଯୁଗେ ଉଡୁ ତବ ପୀରତି ନିଶାଣ ।*

ବରଗଡ଼
ତା ୨୯ । ୪ । ୪୧
ଦିବା ଦ୍ୱିପ୍ରହର



---

* ବ୍ରିଟିଶ ସମ୍ରାଜ୍ୟର ସମ୍ରାଟ ଅଷ୍ଟମ ଏଡୱାର୍ଡ ଓ [illegible] ଏକ ଯୁଗଳ ଛବି ଦର୍ଶନରେ ।

## ଛବିଶ

ଭଜନ ସଦନେ ତବ
ଏବା ଅନାହୁତ
ଅତିଥି ସେ ଥିଲା ଆସି
ଅବା ଦେବ ଦୂତ—

କେଉଁ ସ୍ୱର୍ଗ ଲୋକ କର
ଗାଢ ଅନ୍ଧକାର
ଆସିଥିଲା ଆଲୋକ ସେ
ତୁମର ଆଗାର ?

ସ୍ୱର୍ଗର ଡାକର ପୁଣି
ଭାଙ୍ଗିଲା କି ତାନେ
ବାହୁଡ଼ ଗଲା ସେ ବେଗେ
ଉତ୍କଣ୍ଠିତ ପ୍ରାଣେ ।

ତୁଟାଇ ନିମିଷେ ତବ
ସ୍ନେହର ବନ୍ଧନ
ଚଳିଗଲା ଦେବଦୂତ
ଆପଣା ସଦନ ?

ନନ୍ଦନର ପାରିଜାତ
ବିକଶନ୍ତି କାହିଁ
ମର୍ତ୍ତ୍ୟ ଉପବନେ, ବନ୍ଧୋ !
ବୃଥା ଭାଳି ନାହିଁ ।

ଫେରିତ ଆସିବ ନାହିଁ
ଗଲାଣି ଯେ ଚଳି
ଡାକ ବନ୍ଧୁ ଯେତେ ପାର
ଅଶ୍ରୁ ବାରି ଢାଳି ।

କହିବ ବା କେଉଁ ପ୍ରାଣେ
ପୋଛିବାକୁ ଲୁହ
ବଢାଇବ ସେତ ସିନା
ଅନ୍ତରର କୋହ ।

ନିଭେଛି ଫୁତ୍କାରେ କେବେ
ପ୍ରଚଣ୍ଡ ଅନଳ ?
ବଢଇ ମାରୁତ ସିନା
ପାଇ ନୂଆ ବଳ ।

ତେସନ ହେ ବନ୍ଧୋ ! ଗାଢ଼
ଅନ୍ତର ବେଦନା
ଘୁଞ୍ଚାଇ ପାରେଞ୍ଚ କେବେ
ବାହ୍ୟ ଆଶ୍ୱାସନା ?

ତେଣୁ ବନ୍ଧୋ ! ବନ୍ଧୁ ପଦେ
ମାଗଇଁ କେବଳ
ଦିଅନ୍ତୁ ସେ ସହିବାକୁ
ତବ ମନେ ବଳ

ବରଗଡ଼
ତା ୧ । ୫ । ୪୧



---

* ବନ୍ଧୁବର ଶ୍ରୀ ନଟବର ସାହୁଙ୍କର ଜ୍ୟେଷ୍ଠ ପୁତ୍ରର ଅକାଳ ବିୟୋଗରେ ମର୍ମବେଦନା ବ୍ୟଥିତ ବନ୍ଧୁଚିତ୍ତଶାନ୍ତ୍ୟର୍ଥେ ।

# ସଚେତନ

ଅମର ଯୌବନ ସ୍ରୋତ ଯାଏ କଣେ, ମର
ବକ୍ଷର ଅନ୍ତରେ ଯାହା ଫଲ୍‌ଗୁ ଧାର ପର ?
ପଳିତ ମସ୍ତକ ଅବା ଶିଥିଳ ଶରୀର
ସୂଚଇ ପାରେ କି ନର ଯୁବ କି ସ୍ଥବିର ?
ଲାଳସାର ପୂତି ଗନ୍ଧେ ଯେ ଯୌବନ ଦୁଷ୍ଟ
ହୋଇପାରେ ସେ ଯୌବନ କ୍ଷଣ ପାଇଁ ସ୍ପଷ୍ଟ ।
କିନ୍ତୁ ଯହିଁ ମିଶି ନାହିଁ ଲାଳସା ଗରଳ
ପବନ ପ୍ରଣୟେ ଯହିଁ ପ୍ରାଣ ଟଳ ଟଳ
ବହେ ଯହିଁ ସ୍ୱଚ୍ଛ ପ୍ରେମ ମନ୍ଦାକିନୀ ଧାର
ଉମଳ ପୁଲକେ ଭରି ଅ'ନ୍ତର ସାର ।
ସେ ପ୍ରାଣେ କି ଯୌବନର ଅଛି କେବେ ଶେଷ ?
ଲୋଳିତ ହେଉ ବା ଚର୍ମ ହେଉ ପକ୍ୱ କେଶ !
ମୃତ୍ୟୁ ପଥ—ଯାତ୍ରୀ ତହିଁ ଅନନ୍ତ ଯୌବନ—
ସ୍ୱପନେ ବିଭୋର ହୋଇ ମୁଦଇ ନୟନ;
ମୃତ୍ୟୁକୁ ମଣଇ କିବା ଅମୃତ ସୋପାନ
ଅନନ୍ତ ଜୀବନେ ଯେବେ ପାଏ ସେ ସନ୍ଧାନ ।

ବରଗଡ଼
ତା ୪ । ୫ । ୪୧



# ଅଠେଇଶ

କାହିଁରେ ଦୁଖ    କାହିଁରେ ବେଦନା
କହରେ ମାନବ ଶିଶୁ
କିପାଇଁ ରେ ତେବେ    ଭଗ୍ନ ହତାଶେ
କ୍ଲାନ୍ତ ମଳିନ ଚକ୍ଷୁ ?
କାଳ୍ପନିକ ତୋ    ଦୁଃଖର ବୋଝ
ନୟନ ମେଲି ତୁ ଚାହାଁ,
ଅପର ସଙ୍ଗେ    ତୁଳନା କରି ତୁ
ଦୁଖ ଭୋଗୁଛୁ ଆହା ।
ଚାହୁଁଛୁ ବୋଲି ତୁ    ଉପରକୁ ସିନା
ନିଜକୁ ମଣୁଛୁ ଦୁଖୀ
ତଳକୁ ଚାହାଁ ତୁ    କୋଟିକ ଭିତରେ
ଗୋଟିଏ ଅଛି କି ସୁଖୀ ?
ମୁକୁଟ ଶୋଭିତ    ସିଂହାସନେ ଯେ
ବସିଅଛି ନରମଣି
ମୁହଁରେ କି ତାର    ମାନସ ଘଇକ
ଶଙ୍କା ବିପଦ ଖଣି ?
ଅତି ସୁକୋମଳ    ତୁଳ ତଳପରେ
ପହୁଡେ ଯେ ସାହୁକାର

ଦୁଶ୍ଚିନ୍ତା କଣ୍ଟା        ଫୁଟଇ ନାହିଁ କି
ଜଣେ ଯାଙ୍କ ଦେହେ ତାର ?
କହବୁ ଅବା ତୁ        ଜଡ ମୂଳଆର
ନାହିଁରେ ଚନ୍ତା ଦୁଖ
ଧନ ଯାରା ଖଟି        ଲୁହ ଝାଳ ଢାଳ
ମରେ କିରେ ତାର ଭୋକ ;
ପର୍ଣ୍ଣ କୁଟୀରୁଁ        ଅଜ୍ଞାନୀ ଯାଏ
ଦେଖ ଚଉଆଡେ ଚାହିଁ
ଦୁଃଶ୍ଚିନ୍ତା ଦୁଖ        ଅଭାବ ଅଶାନ୍ତି
ଛାଡ଼ି ରହିଛି କେ କାହିଁ ?
ତେବେ ରେ କିପାଇଁ        ବୃଥା ଲୁହ ଢାଳ
ହତାଶେ ଯାଉଛୁ ମରି
କର୍ମ୍ମ ନାବିକ        କର୍ମ୍ମ ଯାଗରେ
ଭସାଲେ ଜୀବନ ତରି ।
ନାହିଁରେ ଦୁଖ        ନାହିଁରେ ଦୈନ୍ୟ
କହରେ ମାନବ ଶିଶୁ
ଜଡତା ବିଷାଦ        ନିକ୍ଷେପି ଦୂରେ
କର୍ମ୍ମେ ତୋ ପ୍ରାଣ ମେଶୁ ।

ବରଗଡ଼
ତା ୨୭।୫।୪୧

# ଅଣତ୍ରିଶ

'କିପାଇଁ ରହୁ ସଖି ! ମଉନେ ପୋତ ମଥା ?
ଫିଟାଇ କହୁ ଥରେ ଗୁପତ ମନ କଥା ।

ତୋହର ଲାଗି ସିନା ତରୁଣ ଯୋଗୀ ବେଶେ
ଆସିଛି ମାଗେ ଭିଖ ତୋହର ଦ୍ୱାର ଦେଶେ ।

ତୋ ଲାଗେ ତେଜିଛି ମୁଁ ସକଳ ଅଭିମାନ
ଆସିଛି ଭିଖାରୀ ମୁଁ ତୋହର ସନ୍ନିଧାନ ।

ଚାହଁ ଗୋ ଥରେ ମୋରେ ତେଜ ଗୋ ନୀରବତା
ନ ଦିଅ ଭଗ୍ନ ପ୍ରାଣେ ଦାରୁଣ ଗୁରୁ ବ୍ୟଥା ।'

କରୁଣ ମିନତି ମୋ ବାଜିଲା ପ୍ରାଣେ ତାର
ସଜଳ ହେଲା ତାର କଜଳ ଆଖିଗାର ।

ଉଠିଲା ଥର ଚୃରୁ ବୁକୁରେ ରତ୍ନହାର
ଫୁଟିଲା ଅରୁଣିମା କପୋଳ ଦେଶେ ତାର ।

ମଧୁର ମୃଦୁହାସ ଫୁଟିଲା ଜବାଧରେ
କହିଲା ପଦେ କଥା ସେନେହ ମିଶା ସ୍ୱରେ

'ମୁଁ ପରା ମାନସୀ ଗୋ ପରାଣ ପୁରେ ତବ
ରହୁଛି ଅନୁକ୍ଷଣ ନ କର ଅନୁଭବ ?

ତେବେ ଗୋ ତେବେ କପାଁ ଆସିଛ ଧାଇଁ ଦୂରେ
ପାଇବ ମୋର ଦେଖା ଚାହଁ ଗୋ ପ୍ରାଣ ପୁରେ ।

ସହସା ଗଲା ଭାଙ୍ଗି ସପନ ମୋହ ଘୋର
ଦେଖିଲି ନାହିଁ ପାଶେ ମାନସୀ ପ୍ରିୟା ମୋର ।

ବରଗଡ଼
ତା ୨୧ । ୫ । ୩୧



# ଗିରିଶ

ଅଗ୍ନି ସମ ବର୍ଷେ ଯେବେ ରୁଦ୍ର କର ଜାଳ,
ଭୈରବୀ ଝଞ୍ଜା ନାଚେ ହୋଇ ଅସମ୍ଭାଳ ।
ତପ୍ତ ବାଲି ପରେ ନାଚେ ମରୀଚିକା ଛାୟା
ନୁହଇ କି ବିଶ୍ୱ ସ୍ରଷ୍ଟା, ସବୁ ତୁମ ମାୟା ?
ଛଦ୍ମ ବେଶେ ଲୁକ୍କାୟିତ ତୁମରି କରୁଣା
ବିଶ୍ୱହିତ ଲାଗି କେବେ ନୁହଇ ତ ଊଣା ?
ନୁହଇ କି ରୁଦ୍ର ତାପ ବିଶ୍ୱହିତେ ସୃଷ୍ଟି
ଯାହୁଁ ଯାଉ ପଡେ ଝରି ସୁଶୀତଳ ବୃଷ୍ଟି ?
ତେବେ କିଆଁ ହେବ ଦୁଃଖେ ବୃଥା ମ୍ରିୟମାଣ
ମିଳିପାରେ ଯେବେ ତହିଁ ସୁଖର ସନ୍ଧାନ ?
ମାନବ ତା ସୀମାବଦ୍ଧ ଜ୍ଞାନ ଗରିମାରେ
ଅସୀମ ସୃଷ୍ଟି ରହସ୍ୟ କାହୁଁ ବୁଝିପାରେ ?
ତେଣୁ କେବେ ଅକାତରେ ସଦା ପ୍ରାଣେ ବରି
ଦୁଃଖ ଅବା ସୁଖ ଯାହା ଦେବ ଯାଚ କରି ।

ବରଗଡ଼
ତା ୨୬ । ୫ । ୪୧



# ଏକତିରିଶ

ନିଦାଘର ରୁଦ୍ର ତାପ ମୋତେ ଭଲ ଲାଗେ
ଜ୍ୱାଳାମୟୀ ଝଞ୍ଜା ଯେବେ ନାଚେ ଆଖି ଆଗେ ।
ରୁଦ୍ର ତାପେ ଦଗ୍‌ଧୀଭୂତ ହୁଏ ସିନା ତନୁ
ବଳବତୀ ଆଶା କିନ୍ତୁ ନ ତୁଟଇ ମନୁ—
ମାନସ ନୟନେ ଯେବେ ନିଦାଘର ଶେଷେ
ନିରେଖଇଁ ସୁଶୀତଳ ବାରିଧାରା ବେଶେ—
ବିଶ୍ୱର କଲ୍ୟାଣ ମୟୀ ଅମୃତର ବୃଷ୍ଟି,
ଯାହା ଲାଗି ସମ୍ଭବ ଏ ଚରାଚର ସୃଷ୍ଟି ।
ଆଶାର ଏ ସ୍ନିଗ୍ଧ ଛବି ନାଚେ ଯେଣୁ ଆଗେ
ନିଦାଘର ରୁଦ୍ର ତାପ ମୋତେ ଭଲ ଲାଗେ ।
ବସନ୍ତର ମଧୁରିମା ଲାଗେ ନାହିଁ ଭଲ
କୋକିଳ କୂଜନ ଲାଗେ ଯେସନ ଗରଳ
କୁସୁମ ସୁଗନ୍ଧ ବାହୀ ମଳୟ ସମୀର
ପରଶେ ପୁଲକ ନାହିଁ ଲଭେ ମୋ ଶରୀର
ମାନସ ନୟନେ ଯେବେ ଦେଖେଁ ମଧୁଶେଷେ,
ଆସୁଛି ପ୍ରଚଣ୍ଡ ରୌଦ୍ର ତପ୍ତ ଝଞ୍ଜା ବେଶେ—
ଯୋଡ଼ି ଜାଳ ଦେବା ପାଇଁ ଧରଣୀର ମୁଖ
ଏ ଭାବନା ତଳେ କାହିଁ ବସନ୍ତର ସୁଖ ?

ବରଗଡ଼
ତା ୨୭ । ୪ ।୪୧



# ବଡିଶ

ମରୀଚିକା ପଛେ ପଛେ ଧାଇଁବ କେବଳ
ନ ପାଏଁ ପାନ୍ଥକେ ତୃଷା ନିବାରଣେ ଜଳ ।
ଅନନ୍ତ ପିପାସା ବକ୍ଷେ ମୋ ଅନ୍ତର ପୁରେ
ଝଲୁଥିବ ଖାଲି ଧାଇଁ ଦୂରେ, ଅତି ଦୂରେ ।
ଆଶାର ମୋହନ ବଂଶୀ ବାଜୁ ମୋ ପଶଣେ
ଧାଇଁ ଥିବ ଅନୁକ୍ଷଣ ତାହାରି ସନ୍ଧାନେ ।
ନ ମିଳୁ ପାନ୍ଥକେ ମୋର ଇପସିତ ଧନ
ସକଳ ସାଧନା ପଛେ ହେଉ ଅକାରଣ ।
ତଥାପି ନ ଲୋଡେ ମୁହିଁ ଆଶାର ବିନାଶ
ନ ଲୋଡଇଁ ଜୀବନର ଚରମ ବିକାଶ ।
ନ ଲୋଡେ ନିର୍ବାଣ ମୁହିଁ, ସତ୍ତାର ବିଲୟ
ନ ଲୋଡଇଁ ସ୍ୱର୍ଗବାସ ଚିର ଶାନ୍ତି ମୟ,
ନାହିଁ ଯହିଁ ସୁଖ ଦୁଖ ଆଶା ଅନୁଭୂତ
ଜୀବନର ଯଜ୍ଞେ ଯହିଁ ଚରମ ଆହୁତ !
ନ ହେଉ ପାନ୍ଥକେ ସବୁ ଆଶା ମୋ ସଫଳ
ଆଶା ମାତ୍ର ଥାଉ ବଞ୍ଚି ଜୀବନ ସମ୍ବଳ ।

ବରଗଡ଼
ତା ୨୮ । ୫ । ୪୧



# ତେତିଶ

କାହାର ଏ ସୃଷ୍ଟି ଲୀଳା,
କଲା ସରଜନା ଚରନ୍ତନୀ ଉଷ୍ମ
ଫୁଟାଇ କଠୀନ ଶିଳା ?

ପଡ଼ଲା ଅବା କି ସ୍ରବ,
କରୁଣାର ଧାର ବାରି ଧାର ରୂପେ
ପାଷାଣ ଗଲା କ ଦ୍ରବ ?

ଗଲା ଅସମ୍ଭାଳେ ଧାଇଁ,
ବାରି ଧାର ଯେବେ ବ'ନ୍ଧୁର ଶେଯେ
ନ ମାନଲା ବାଧା କାହିଁ

ଭୃଗୁ ପରେ ଭୃଗୁ ଡେଇଁ
କଲା ଅଭିନବ ପ୍ରପାତର ସୃଷ୍ଟି
ଶିଖର ଶିଖରେ ସେହିଁ ।

ମୁଗ୍ଧ ନେନେ ଯେବେ କବ
ଦେଖି ଦେଲା ସେଥ୍ ଅପରୂପ ଶୋଭା
ଅନ୍ତର ତା ଗଲା ଦ୍ରବି ।

କବ ମନେ ହୁଏ ପ୍ରତେ
ପଡୁଛି କି ଝରି ଜାହ୍ନବୀର ଧାର
ବ୍ୟୋମ କେଶ କେଶୁଁ ସତେ ?

ଅଥବା ଜ୍ୟୋଛନା ରାଶି
ଧଗାଳଡ ହୋଇ ଚନ୍ଦ୍ରମଣ୍ଡଳରୁ
ଧରାରେ ପଡଇ ଖସି ?

ଅବା ସ୍ରୋତ ରଜତର
ଶିଖର ଶିଖରେ ହୋଇ ଦ୍ରବୀଭୂତ
ଝରି ପଡେ ଝରଝର

ନୀଳବନ ଗିରି ଅଙ୍ଗେ
ସ୍ଫଟିକର କାନ୍ତି— ସ୍ୱଚ୍ଛ ବାରି ଧାର
ଶୋଭଇ ଆହା କି ରଙ୍ଗେ ।

ଘନ ଗୁରୁ ଗରଜନେ
କମ୍ପିତ କରି ସେ ଗିରି ଦରି ଗାଙ୍କ
ଭୀତ ଜନମାଏ ମନେ ।

ଶୁଭ ଦିନକର କର
ପ୍ରତି ଫଳେ ଯେବେ ପ୍ରପାତର ଅଙ୍ଗେ
ଦିଶେ କେତେ ମନୋହର ।

ଧନ୍ୟ ସେ ବିଧିର ଲୀଳା
ସୃଷ୍ଟି କଲା ଯେହୁ ତରଙ୍ଗିନୀ ଉଗ୍ର
ଫୁଟାଇ କଠୀନ ଶିଳା ।*

ବରଗଡ଼
ତା ୩ । ୭ । ୪୧
ଓ
ତା ୪ । ୭ । ୪୧



---

* ସମ୍ବଲପୁର ଜିଲ୍ଲାର ନୃସିଂହନାଥ ଜଳପ୍ରପାତ ଦର୍ଶନେ ।

# ଚଉତିରିଶ

ଶ୍ରାବଣ ରଜନୀ ଯେବେ          ଝରେ ଝର ଝର,
ବାଜେ କାର ଉଷ୍ଣଶ୍ୱାସ          ଶୀତ ଗଣ୍ଡେ ମୋର ?
କାହାର କୋମଳ ବାହୁ          ଭିଡେ ମୋର ଗଳେ
କା ଅଧରୁ ଝରେ ସୁଧା          ମୋ ଶୁଷ୍କ ଅଧରେ ?
କାନେ ଢାଳେ ସୁଧାକାର          ଚୁପି ଚୁପି କଥା,
କା ପରଶେ ଯାଏଁ ଭୁଲି          ଦୂର ବାସ୍ତବତା ?
ମନଯାଏ ଉଡ଼ି କେଉଁ          କଳପନା ପୁରେ,
ବାସ୍ତବତାର ଜଞ୍ଜାଳ          ଫିଙ୍ଗି ଦେଇ ଦୂରେ ।
ବକ୍ଷେ କାର ରଖି ମଥା          ପଡେ ମୁଁ ଢୁଳାଇ,
ଥର ଉଠେ ଅଙ୍ଗ ମୋର          କା ପରଶ ପାଇ ?
କହ ଗୋ ପବଣ ପ୍ରେୟେ          କହ କିଏ ତୁମେ,
ଫୁଟାଅ ସ୍ନେହର ଉତ୍ସ          ହୃଦ ମରୁଭୂମେ ?
ଶ୍ରାବଣୀ ରଜନୀ ଯେବେ          ଝରେ ଝର ଝର,
କା ପରଶେ ଲଭେ ମୁହିଁ          ସୁଖ ସରଗର ?
'ବାନ୍ଧ ପ୍ରିୟା, ବାନ୍ଧ ମୋରେ          ନିବିଡ ବନ୍ଧନେ,
ତପ୍ତକର ଶୀତ ତନୁ          ସ୍ନେହର ଇନ୍ଧନେ ।'

ବରଗଡ଼
ତା ୬ । ୭ । '୪୧



# ପଞ୍ଚତିରିଶ

ଯେ ପଥେ ନିଅ ଚୃଳ
ତୁମେ ଗୋ ମୋ ନିୟତ !
ସେ ପଥେ ଯିବା ଚଳା
ନାହିଁ ମୋ ଆନ ଗତ ।

ନିଜର ଭଲ ମନ୍ଦ
ଭବିଷ୍ୟ ପରପାରେ,
ପାରେ ତ ନାହିଁ ଦେଖି
ଅଜ୍ଞାନ ଅନ୍ଧକାରେ ।

ଲାଗିଲା ପର କୃତ
କରଇଁ ଯେବେ ଯାହା,
ନୁହେଁ କି ତୁମର ଗୋ
ଇଙ୍ଗିତ କଲେ ତାହା ?

ଭାବଇଁ ଏକମନେ
କରଇଁ କିପାଁ ଆନ ?
ନ ପାରେ ବୁଝି ମୁଁ ତ
କିଏ ସେ ନଳ ବାନ—

ଝଙ୍କୋରେ ଦେଇ ଧକ୍କା
ନଅଇ ମୋତେ ଶୃଙ୍ଖ
ଶୃଙ୍ଖଳେ ମୁଁ ଅବରତ
ପାଗଳ ପରି ଖାଳି ।

ଅଦୃଷ୍ଟ ଶକଟ ସେ
ଗୋପନେ କାହିଁ ବସି
ମାନବ ଭାଗ୍ୟ ଡୋରି
ଧରିଛି ଆକର୍ଷି ?

ଅଯଥା ଅହଂକାରେ
କରେ ଯେ ଆସ୍ଫାଳନ
ନୁହେଁ କି ନିୟତିର
ବଳେ ସେ ବଳୀୟାନ ?

ନିଜର କୃତ କର୍ମ
ଲାଗି ଯେ ଅନୁତପ୍ତ,
ନିୟତି ଶାପେ ସେହି
ନୁହେଁ କି ଅଭିଶପ୍ତ ?

କେତେବେ ଗୋ କେତେବେ କହିଁ
ବୃଥାରେ ଭାବ ଖାଲି,
ନିୟତିକୁ ଫିଙ୍ଗିଇବ
ତପତ ଲୁହ ବାରି ?

ସୁଖବା ଦୁଖ ଯାହା
ନିୟତି ନିର୍ଦ୍ଦେଶରେ
ଆସୁ ଗୋ ନେବି ବରି
ସାଦରେ ଶିର ପରେ ।

ଯେ ପଥ ଦେଖାଇବ
ନିୟତି ହାତ ଠାରି,
ଭଲବା ମନ୍ଦ ହେଉ
ସେ ପଥେ ଯିବି ଚାଲି ।

ପୁଣ୍ୟର ରଜ ପଥେ
ଅଥବା ପାପ ପଙ୍କେ
ନିୟତି ନିର୍ଦ୍ଦେଶରେ
ଚାଲିବି ମୁଁ ନିଶଙ୍କେ ।

ବରଗଡ
ତା ୧୫ । ୭ । ୪୧



# ଛତିରିଶ

ବୁଝି ନାହିଁ ପାରେ କାର ଅପୂର୍ବ ଏ ସୃଷ୍ଟି
ଝରି ପଡେ ଯେବେ ଆଦ୍ୟ ଆଷାଢର ବୃଷ୍ଟି ?
ସନ୍ତାପିତ ଧରା ଅଙ୍ଗ ଶୀତଳ ପରଶେ
ହୁଏ ରୋମାଞ୍ଚିତ ଅବା ବିପୁଳ ହରଷେ ।
ଉଷରେ ଉଠଇ ଫୁଟି ନବୀନ ଅଙ୍କୁର
ଲଭି ସେ ଅମେୟ ସ୍ପର୍ଶ ସିକ୍ତଗନ୍ଧ ମଧୁର ।
ସ୍ରଷ୍ଟର ଏ କମନୀୟ ଶୋଭା ଲୀଳାୟିତ
ମୁଗ୍ଧ ନେତ୍ରେ ଚାହିଁ କବି ହୁଏ ପୁଲକିତ ।
ବିପୁଳ ଆନନ୍ଦ ସ୍ପର୍ଶେ ଉଠଇ ଶିହରି
ଆଦ୍ୟ ଆଷାଢର ବୃଷ୍ଟି ପଡେ ଯେବେ ଝରି ।
ମନେ ପଡେ, କେଉଁ ଯୁଗେ ବସି ଭାବେ ଯକ୍ଷ,
ବିରହ ବେଦନା ଭରେ ଭାଙ୍ଗି ପଡେ ବକ୍ଷ,

ନୟନରୁ ପଡ଼େ ଝରି ଲୋତକ ଆସାର
ଝରେ ଯେବେ ଆଷାଢ଼ର ଆଦ୍ୟ ବାରିଧାର,
ବିରହିଣୀ ଯକ୍ଷ ବଧୂ ବସି କେଉଁ ଦୂରେ
ଝୁରଇ ନୟନୁ ଲୁହ ପ୍ରିୟ ପାଇଁ ଝୁରେ,
ବାତାୟନ ପଥେ ବାଳା ନୀଳ ନଭେ ଚାହିଁ
ଉଜାଗରେ ଯାପି ନିଶି ଦିଅଇ ବିତାଇ ।
ପ୍ରେମିକ ପ୍ରେମିକା ପ୍ରାଣେ ବିରହ ରାଗିଣୀ
ବାଜି ଉଠେ ଯେବେ, ବାଜେ ତାର ପ୍ରତିଧ୍ୱନି—
କବି ହୃଦ ବୀଣା ତାରେ, ମଧୁର ଝଙ୍କାରେ
ଝରାଏ ସେ ଭାବଧାରା କାବ୍ୟ କବିତାରେ ।
ସମ ବେଦନାରେ କବି ପ୍ରାଣ ଯାଏ ଭରି
ପଠାଏ ସେ ମେଘଦୂତେ ପ୍ରେମ ଦୂତ କରି ।
ବିଶ୍ୱର ବିରହ ବ୍ୟଥା ବାଜେ ଯେଣୁ ପ୍ରାଣେ
ଧାଏଁ କବି ଅବିରତ ପ୍ରେମର ସଂଧାନେ ।
ଲଭେ ସେ ଅମୃତ ଯେବେ କବି ପ୍ରାଣେ ତାର
ଡାକି ଦିଏ ଅଜାତରେ ସ୍ୱଚ୍ଛ ଭାବଧାର—
ଅନ୍ତରୁ ନିଗାଡ଼ି ତାର, ବିଶ୍ୱହିତ ଲାଗି
ବିଶ୍ୱ ସୁଖେ ଦୁଃଖେ ହୁଏ କବି ସମଭାଗୀ ।

ଉ. ଦିଗଡ଼ି

ତା। ୧୭ । ୭ । ୪୧



# ସଇଁତିରିଶ

ଈଶ୍ୱର କହନ୍ତ ମୋର ଜୀବନଟି ବ୍ୟର୍ଥ
ସୃଷ୍ଟି ଲୀଳା ବୁଝିବାକୁ ଯେଣୁ ଅସମର୍ଥ ।
ସୃଷ୍ଟି ଯନ୍ତ୍ର ଚଳାଏ ଯେ ଯନ୍ତ୍ରୀ କଉଶଳୀ
ଅଦୃଶ୍ୟ ସେ ମହାଶକ୍ତି ମହା ବଳଶାଳୀ ।
କେ ବୋଲଇ ଭାଗ୍ୟ ତାକୁ କେ ବୋଲେ ନିୟତ
ନ ପାରଇଁ ଦେଖି କାହିଁ ଅଛି ସେ ଶକତ ।
କିନ୍ତୁ ଅନୁଭବ କରେଁ ତା ଶକତ ମର୍ମେ
ଦିଏ ସେ ପ୍ରେରଣା ଯେଣୁ ସକଳ ମୋ କର୍ମେ ।
ନ ପାରଇଁ ବୁଝି କାର ଅଦୃଶ୍ୟ ଇଙ୍ଗିତ
ନିଅଇ ଚଳାଇ ମୋତେ, ହୁଏଁ ଆଚମ୍ଭିତ ।

ଯେତେ ଚେଷ୍ଟା କଲେ ବୃଥେ ହେବାକୁ ମୁଁ ଠିଆ
ପଛକୁ ଦଥଇ ସେତ ସଜୋରେ ଚଁହିଆ ।
ଉଠି ପଡ଼ ଧାଏଁ ମୁହଁ ଯେହ୍ନେ ଭୂତଗ୍ରସ୍ତ
ନ ଦଏ ସେ ଛାଡ଼ ହେଲେ ଯେତେ ବ୍ୟତବ୍ୟସ୍ତ ।
ଆଁଠୁ ଗଁଠି ଯାଏ ଛିଣ୍ଡି ବହେ ରକ୍ତଧାର
ତଥାପି ନ ଜାଗେ ପ୍ରାଣେ ବଳେ ଦୟା ତାର ।
ରୋଗେ ଶୋକେ ପଡ଼ି ଯେବେ ମାରେଁ ଅବ୍ୟାହତ,
ତଥାପି ନ ଛାଡ଼େ ଚଳେ ସେ ମହା ଶକଟ ।
ଅବିରତ ଚଳାଏ ସେ ତା ସୃଷ୍ଟିର କଳ
କି ଉଦ୍ଦେଶେ ଜଣା ଥିବା, ତାକୁହିଁ କେବଳ ।

ବରଗଡ
ତା ୧୯ । ୭ । ୪୧



# ଅଢ଼ତିରିଶ

ତୁମେ ପରା ବିଶ୍ୱ ସ୍ରଷ୍ଟା !          ମଙ୍ଗଳ ଆଳୟ
ତେବେ କପାଁ କରିବ ମୁଁ          ଅକାରଣେ ଭୟ ?
ପାପର କର୍ଦ୍ଦମେ ଅବା          ପୁଣ୍ୟ ମନ୍ଥ୍ର ପଥେ
ଯହିଁ ନେବ ଟାଣି ତହିଁ          ଯିବ ଅନୁଗତେ ।
ପୁଣ୍ୟ ପଦ ତବ ସୃଷ୍ଟି          ନୁହଇ କି ପାପ ?
ତେବେ କପାଁ କରିବ ମୁଁ          ବୃଥା ଅନୁତାପ ?
ପାପେ କପାଁ ଲଭିବ ମୁଁ          ଅକାରଣ ଭୀତି
ପାପର ବନ୍ଦୀନେ କାହିଁ          ପୁଣ୍ୟର ବା ସ୍ଥିତି ?
ପାପ ବୋଲି ଭଣେ ଯାହା          ସମାଜର ନେତେ
ନୁହଇ କି ପୁଣ୍ୟେ ଗଣା          ତାହା ଅନ୍ୟ କ୍ଷେତ୍ରେ ?

ପାପେ ଅବା ପୁଣ୍ୟେ ତବ      ଅଶେଷ କରୁଣା
ନୁହଁଇ ତ କାହିଁ ହେଲେ      ତିଳେ ମାତ୍ର ଊଣା ?
ପୁଣ୍ୟ ଯଦି ସ୍ରଷ୍ଟା, ତବ      ଆଲୋକର କାୟା
ନୁହଇଁକି ପାପ ତାର      ଅନ୍ଧକାର ଛାୟା ?
ଆଲୋକ ଅନ୍ଧାରେ ଗଢା      ନୁହଁଇ କି ସୃଷ୍ଟି ?
ଅନ୍ଧକାରେ ନ ପଡ଼େ କି      ତବ ଦିବ୍ୟ ଦୃଷ୍ଟି ?
ଯାହା ଦେବ ପାପ ପୁଣ୍ୟ      ସୁଖ ଅବା ଦୁଖ
ବରି ନେବା ଲାଗି କିପାଁ      ହେବି ମୁଁ ବିମୁଖ ?
ଭବିଷ୍ୟତେ ଦେଖିବାକୁ      ଯେଣୁ ଅସମର୍ଥ
କିପରି କହିବି କେଉଁ      କାର୍ଯ୍ୟ ଅବା ବ୍ୟର୍ଥ ?
ଆପାତଃ ବ୍ୟର୍ଥତା ମଧ୍ୟେ      ପୂର୍ଣ୍ଣ ସାର୍ଥକତା
ନାହିଁ ବୋଲିବାକୁ କାର      ଅଛି କି କ୍ଷମତା ?
ନ ପାରେ ମୁଁ ବୁଝି ଯେଣୁ      ସୃଷ୍ଟିର ରହସ୍ୟ
ଅଜ୍ଞେୟ ସେ ସୃଷ୍ଟି କର୍ତ୍ତ      ତେଣୁ ମୋ ନମସ୍ୟ ।

ବରଗଡ଼
ତା ୨୦ । ୭ । ୪୧



# ଅଣଚାଳିଶ

ନ ଭାଙ୍ଗ ନ ଭାଙ୍ଗ ସଖି ! ଚନ୍ଦ୍ରିକା ସ୍ୱପନ
ସୁଖର ପରଶ ଯହିଁ ଲଭେ କିଛି କ୍ଷଣ ।
ନ ଲୋଡେ ସୁସୁପ୍ତି ମୁହିଁ ଚେତନା ବିନାଶ
କିମ୍ବା ପୂର୍ଣ୍ଣ ଜାଗରଣେ ନାହିଁ ମୋର ଆଶ ।
ନ ଲୋଡେ ମୁଁ ରଜନୀର ଗାଢ ଅନ୍ଧକାର
ଅଥବା ଆଲୋକ ଭାତି ମଧ୍ୟାହ୍ନ ଦିବାର ।
ଉଷାର ଗୋଲାପି ଆଭା ପରାଚୀ ଗଗନେ
ସନ୍ଧ୍ୟାର ସ୍ନିଗ୍ଧ ଶୋଭା ଗୋଧୂଳି ଲଗନେ
ନିରେଖଇଁ ନୟନେ ଯେବେ ତୃଷିତ ପରାଣ
ସ୍ୱର୍ଗୀୟ ସୁଧାର କିବା ଲଭଇ ସନ୍ଧାନ ।
ନ ଲୋଡଇ ଚିର ମୁକ୍ତି ସତ୍ତାର ବିଲୟ
ସଂସାର ବନ୍ଧନ ଅବା ଜଂଜାଳ ମୟ ।
ସଂସାରେ ଥାଇ ମୁଁ ହେବି ସଦା ଉଦାସୀନ
ସୁଖେ ଦୁଖେ ନିର୍ଲିପ୍ତ ମୁଁ ଥିବି ନିଶି ଦିନ,
ସାଥେ ଯହିଁ ଥିବ ପ୍ରିୟେ ତୁମେ ଅନୁକ୍ଷଣ
ସଂସାରର ମରୁ ହେବ ନନ୍ଦନର ବନ ।
ଆନନ୍ଦ ଆଧାର ହେବ ସଦା ମୋ ପରାଣ
ମରଣେ ପାଇବି ମୁହିଁ ଅମୃତ ସନ୍ଧାନ

ବରଗଡ଼
ତା ୧୫ । ୮ । ୪୧



# ଚାଳିଶ

ନ ପାରେଁ କିପାଁ କରି       କରେ ଯା କଳପନା
ମନରେ ଯାଏ ମରି       ସକଳ ମୋ ଭାବନା ?
ଶୂନ୍ୟେ ମୁଁ ଗଢେଁ ଯେବେ       ଅଟ୍ଟାଳୀ ହବାନିଶି
କାହାର ଫୁତ୍କାରେ ସେ       ଧୂଳିରେ ଯାଏ ମିଶି ?
ହତାଶେ ପଥ ଯେବେ       ଅନ୍ଧାରେ ଯାଏ ଭରି
ଦେଖାଏ କିଏ ପଥ       ଆଲୋକ ଶିଖା ଧରି ?
ଅବଶ ଅଙ୍ଗେ ମୋର       ଢଏ କେ ନୂଆବଳ
ନ ପାରେ ବୁଝି ମୁଁ ତ       କାର ଏ କଉଶଳ ?
ଯନ୍ତ୍ର ଚାଳିତ ପରି       ଯାଏ ମୁଁ କର୍ମ କରି
ଚଳାଇ ନିଏ କିଏ       ଅଲକ୍ଷେ ସୂତ୍ର ଧରି ?
ଦେଖାଏ ଆଖି ଆଗେ       ନୂତନ କର୍ମ ପନ୍ଥା
ଗୋପନେ କହେ କେତେ       ମରମେ ଆଶାକଥା ।
ନ କରି କର୍ମ ମୁଁ ତ       ପାରଇଁ ନାହିଁ ବସି
କରମ ପଥେ କିଏ       ନିଅଇ ଆକରଷି ?
ନୂତନ ଉଦ୍ୟମରେ       ଯାଏ ମୁଁ କରି କର୍ମ
ଏ ଗୂଢ ରହସ୍ୟର       ନ ପାରେ ବୁଝି ମର୍ମ ।

ବରଗଡ଼
ତା ୧୭।୮।୪୧



# ଏକଚାଳିଶ

ଝର ଝର ଝରେ ଯେବେ
ଧାରା ଶିରବଣି
ଘନ ଘୁଡୁ ଗରଜନେ
କମ୍ପଇ ଧରଣୀ
ସୃଷ୍ଟିର ଅବ୍ୟକ୍ତ ଏକ
ମଧୁମୟ ଛନ୍ଦ
ଭାସି ଆସେ ପ୍ରଭଞ୍ଜନ
ସାଥେ ମନ୍ଦ ମନ୍ଦ,
ମାନସ ମନ୍ଦିରେ ମୋର
ସେ ଅବ୍ୟକ୍ତ ଧ୍ୱନି
ତୋଳଇ ପ୍ରବେଶି ତାଳେ—
ତାଳେ ପ୍ରତି ଧ୍ୱନି ।
ଅବ୍ୟକ୍ତ ଆନନ୍ଦେ ହୁଏ
ପ୍ରାଣ ମୋ ଅଥୟ
ବୃଷ୍ଟି ସଙ୍ଗେ ଗାଏଁ ମୁହିଁ
ସୃଷ୍ଟିର ଜୟ ।
ସୃଷ୍ଟି ସାଥେ ପ୍ରଳୟର
ଭଇରବୀ ଛନ୍ଦ
ଶୁଣେ ଯେବେ ପ୍ରାଣ ମୋର
ହୁଅଇ ନିସ୍ପନ୍ଦ ।

ସୃଷ୍ଟିର ଜନକ ଯେଉଁ
ମଧୁମୟ ବୃଷ୍ଟି
କରଇ ସେ ବନ୍ୟା ରୂପେ
ପ୍ରଳୟର ସୃଷ୍ଟି ।
ପ୍ରଳୟର ଲୋଳ ଜିହ୍ୱା
ଲହ ଲହ କରି
ଧ୍ୱଂସ ରୂପୀ ମହା ବନ୍ୟା
ଆସେ ଅବତରି ।
ସୃଷ୍ଟି ସଙ୍ଗେ ପ୍ରଳୟର
ଏ ଦ୍ୱୈତ ସଙ୍ଗୀତ
ବୃଷ୍ଟି ସଙ୍ଗେ ଝଣ୍ଟରନ୍ତେ
ହୁଅଇ ଧ୍ୱନିତ ।
ସେ ଧ୍ୱନି ଶ୍ରବଣେ ହୁଏ
ବିସ୍ମୟେ ସ୍ତମ୍ଭୀତ
ଝରେ କବ ପ୍ରାଣୁଁ ମୋର
ଅବ୍ୟକ୍ତ ସଙ୍ଗୀତ ।

ବରଗଡ଼
ତା। ୧୮ । ୮ । ୪୧



# ବୟାଳିଶ

ତୁମର ଇଚ୍ଛା ଶକ୍ତି ମାନସ ପୁରେ ମମ
ଆଘାତ କରେ ସଦା ନୁହେ କି ପ୍ରିୟତମ !
ଚଳାଇ ନିଅ ଯଦି ପୁଣ୍ୟର ରୁଜୁ ପଥେ
ସୁକର୍ମ କରେ ମୁହିଁ ତୁମର ମନୋମତେ ।
ପୁଣ୍ୟର ଫଳ ପରା ତୁମେ ହିଁ ଯାଚି ଦିଅ
ନିମିତ୍ତ ମାତ୍ର ମୁହିଁ ଅଟଇ ସିନା ପ୍ରିୟ ?
ସେ ପୁଣ୍ୟ ଫଳେ କିନ୍ତୁ ନାହିଁ ମୋ ଅଧିକାର
ନୁହେଁ ମୁଁ କର୍ତ୍ତା, ଯେଣୁ ତୁମେ ହିଁ ବଳୟାର ?
ଢତୁବା ନିଅ ଯଦି ପାପର ପଥେ ଚୁଳ
ବୃଥାଚର କ୍ଷମା ମୋତେ ଦେବ ହେ ତୁମେ ଗାଳ ?
ପାପ କି ନୁହେଁ ତୁମ ସୃଷ୍ଟିର ମଧ୍ୟେ ଗଣା ?
ହେବ ମୁଁ ଦାୟୀ କିପାଁ ନହେଲେ ବା ବାଟ ବଣା ?
ସବୁର କର୍ତ୍ତା ଯେଣୁ ତୁମେହିଁ ହେବ ଦାୟୀ
ଚାଲେ ମୁଁ ମାତ୍ର ତୁମ ଇଚ୍ଛାର ଅନୁଯାୟୀ ।
ତୁମର ଇଚ୍ଛା ଯଦି କରାଏ ମୋତେ ପାପ
ଭୋଗିବି କିପାଁ ଦୁଖ କରି ମୁଁ ଅନୁତାପ ?
ନୁହେଁ ମୁଁ କର୍ତ୍ତା ଯଦି ପୁଣ୍ୟର ଫଳଲାଗି
ହେବ ମୁଁ କିପାଁ ତେବେ ପାପର ଫଳ ଭାଗୀ ?

ବଳଗଡ଼
ତା ୨୩ । ୮ ୪୮



# ତେଇଆଳିଶ

ରଜନୀର ସ୍ନିଗ୍ଧ କୋଳେ ଉଠିଥିଲୁ ଫୁଟି
ରୂପ ସଉରଭେ ଅବା ପଡୁଥିଲୁ ଲୁଟି
ପ୍ରବାଳ ଅଧରେ ଶୁଭ୍ର ସ୍ଫଟିକର ହାସ,
ମୋହୁଥିଲୁ ଜନ ମନ କରି ପରକାଶ ।
ଶାରଦ ଜ୍ୟୋତ୍ସ୍ନା ଜଳେ ତନୁ ଅବଗାହି
କ୍ଷଣିକ ଜୀବନ ପନା ଦେଲୁ ଗୋ ବଢାଇ ।
ଶତ ଶତ ମୁଗ୍ଧ ବଧୂ ସଉରଭ ହରି
ମନ୍ଦ ଗନ୍ଧବହ ଯେବେ ସଧୀରେ ସଞ୍ଚରି,
କମ୍ପନ୍ତି ପ୍ରେମିକ ବେଶେ ମିଳିଲା ତୋ ପାଶେ
ସଉରଭ ମଧୁ ତୋର ଲୁଟି ନେବା ଆଶେ,
ପଞ୍ଜର ମର୍ମର ସ୍ୱନେ ପ୍ରେମ ଗୀତ ଗାଇ
କହିଲା ସେ ଶୃଙ୍ଗୁ ଦାଣି ତୋ ମନ ମଜାଇ ।
ବ୍ୟର୍ଥ ସିନା ହେଲା ତାର ପ୍ରେମ ନିବେଦନ
ନ କଲୁ ଗୋ ଦାନା ତାରେ ଆତ୍ମ ସମର୍ପଣ

କହିଲୁ ଗୋ "ଲକ୍ଷ୍ମୀର ଭୋଗତୃପ୍ତି ପାଇ
ରୂପ ସଉରଭ ମୋର ସୃଷ୍ଟ ହୋଇନାହିଁ ।"
ନ ମାନିଲା ବାଧା ତବ ଇକ୍ଷ୍ମୀ ସମୀର
ଛୁଇଁଲା ସର୍ଧୀରେ ତବ କୋମଳ ଶରୀର,
ଲାଜ ଅଭିମାନେ ବାଳା ଗଲୁ ଅପସରି
ପରିପୂର୍ଣ୍ଣ ଯଉବନେ ପଡ଼ିଲୁ ଗୋ ଝରି
ନ କରି ଲକ୍ଷ୍ମୀ କରେ ଆତ୍ମ ସମର୍ପଣ
ଅକୁଣ୍ଠିତ ହେଲୁ ବରି ଅକାଳ ମରଣ ।

ବାରିଗଡ଼
ତା ୭ । ୯ । ୪୧



# ଚଞ୍ଚରାଲିଶ

କିଏ ଗୋ କ୍ଷଣିକା, ତୁମ୍ଭ
ନବ ଅନୁରାଗେ
ଉଭା ହେଲୁ କ୍ଷଣ ପାଇଁ
ଆସି ଆଖି ଆଗେ ?
ସମୁନ୍ନତ ଘନ ବକ୍ଷେ
ସ୍ନିଗ୍ଧ ଶ୍ୟାମ ବାସ
କରୁଥିଲା ଦୂରୁଁ ଦୂରୁ
ଶୋଭା ପରକାଶ ।
ଖେଳାଇ ତୁ ସ୍ମିତ ହାସ
ସୁରଙ୍ଗ ଅଧରେ
ଚାହୁଁଥିଲୁ ଆଖି କୋଣେ
କିବା ସରାଗରେ ।
ଯେ କଟାକ୍ଷେ ଟାଣୁ ଥିଲୁ
ମୃତ ଜନ ମନ
ବନସୀ ଅଧାର ଟାଣେ
ମୀନକୁ ଯେସନ ।
ରୂପର ବୁଭୁକ୍ଷୁ ଜନେ
କର ରୂପ ଦାନ
ନ କରୁ କି ରୂପସି ! ଗୋ
ଜଗତେ କଲ୍ୟାଣ ?
ଦାନ ଯଦି ଧର୍ମ ବୋଲି
ଜଗତରେ ଜଣା
ରୂପ ଦାନ କିପାଁ ହେବ
ପାପ ମଧ୍ୟେ ଗଣା ?
ନ ରଖି ପାର୍ଥକ୍ୟ କିଛି
ଇତର ବିଶେଷେ
କରୁ ରୂପଦାନ ତୁମ୍ଭ
ଜନ ନିର୍ବିଶେଷେ ।

ଲାମ୍ପଟ୍ୟର ଅତ୍ୟାଚାରେ ଜଳେ ହୋଇ ଭାଗୀ
ଦେଉ ସିନା ଆତ୍ମବଳୀ ସମାଜର ଲାଗି ।
ଲୁଚନ୍ତି ସମାଜ କନ୍ତୁ ତୋତେ କରେ ଘୃଣା
ସମାଜ ଆଖିରେ ତୁହି ଅଛ ନଉଜୁଣା ।
ସବଳର ଅତ୍ୟାଚାରେ ଦୁର୍ବଳ ପୀଡ଼ିତ
ଜୀବନ ସଂଗ୍ରାମ ମୂଳେ ଏ ନୀତ ନହିତ
ତେଣୁ ସିନା ଭଗିନୀ, ତୁ ସେ ସମାଜେ ଘୃଣ୍ୟ
ମନଇଚ୍ଛା ଗଢ଼େ ଯେହୁ ପାପ ଅବା ପୁଣ୍ୟ ।

ଦବଗଡ଼
ତା ୮ । ୯ । ୪୧



# ପଇଁଚାଳିଶ

ବୁଝିତ ନ ପାରେଁ କାର    ଅନନ୍ତ ମହିମା
ସୃଜନ କଲା ଏ ସୃଷ୍ଟି    ଶ୍ୟାମ ମଧୁରିମା ?
ବିଶ୍ୱର ଜୀବନୀ ଶକ୍ତି    ତା ଗର୍ଭେ ନିହିତ
କଲା ସଂଗୋପନେ କାର    ଅଦୃଶ୍ୟ ଇଙ୍ଗିତ ?
ସୁଶ୍ୟାମଳ ଶସ୍ୟ ଯେବେ    କ୍ଷେତ୍ର ଉଠେ ଭରି
ବିଶ୍ୱପ୍ରାଣେ ନାଚି ଉଠେ    ଆନନ୍ଦ ଲହରି
ସେ ଲହରି ତାଳେ ତାଳେ    ସୃଜନ ସଙ୍ଗୀତ
ବିଶ୍ୱ ବୀଣା ତାରେ ସଦା    ହୁଅଇ ଧ୍ୱନିତ ।
ଆଶାର ମୋହନ ବଂଶୀ    ବାଜେ ବିଶ୍ୱ ପ୍ରାଣେ
ବିଶ୍ୱ ବାସୀ ଧାଏଁ ତେଣୁ    ଆନନ୍ଦ ସନ୍ଧାନେ
କର୍ମର ପ୍ରବାହ ଖେଳେ    ବିଶ୍ୱ ପାଷ୍ୱବାରେ
ସୃଷ୍ଟିର ଏ ଗୂଢ଼ ମର୍ମ    ବୁଝି ନାହିଁ ପାରେ ।

ବରଗଡ଼
ତା ୨୪ । ୯ । ୪୧



# ଛଇଆଳିଶ

କରିବ ମୁଁ ଅନୁତାପ କପାଁ ଅକାରଣେ
ଘଟେ ଯଦି ସବୁ ତୁମ ବିଧିର ବିଧାନେ ?
କର୍ତ୍ତା ଯଦି ତୁମେ, ମୁହିଁ ନିମିତ୍ତ କେବଳ
ତୁମେ ଯଦି ଖେଳୁଆଳ ମୁହିଁ ନ୍ୟାୟବଳ,
ତୁମେ ଯଦି ଚଳାଉଛ ଧରି ଭାଗ୍ୟ ଡୋର
କରେଁ ଯଦି କର୍ମ ମୁହିଁ ନିଜତ୍ୱ ପାଶୋର
ଅଣାୟତ୍ତେ, ସଦା ତବ ଇଚ୍ଛା ଅନୁଯାୟୀ
ହେବ ମୁଁ କିମ୍ପାଇ ମୋର କର୍ମ ପାଇଁ ଦାୟୀ ?
ନାହିଁ, ଯଦି ଅଛି ମୋର ସ୍ୱତନ୍ତ୍ର ଅସ୍ତିତ୍ୱ
ମୋର କର୍ମ ପାଇଁ ଯଦି ମୋହର ଦାୟିତ୍ୱ
ତେବେ କପାଁ ମାନିବ ମୁଁ ମିଛେ ଭଗବାନ ?
ଛବା ଫଳ କରି ବୃଥା ପୂଜା ସ୍ତୁତି ଗାନ ?

ନ ପାରେ ମୁଁ କରି ଏହି      ପ୍ରଶ୍ନ ସମାଧାନ
ସଂଶୟେ ମଳୀନ ଯେଣୁ      ସଦା ମୋର ଜ୍ଞାନ
ତେଣୁ ସିନା ଅକାରଣ      କରେଁ ଅନୁତାପ
ଭୋଗେଁ ଡରି ମରି ବୃଥା      ଶୋକ ପାପତାପ ।
ଏକ ଅବା ଆନ ପନ୍ଥା      ଯଦି ଦୃଢ଼ କରି
ପାରିବି ମୁଁ ଏକ ନିଷ୍ଠେ      ପ୍ରାଣ ପଣେ ଧରି
ନ ରହନ୍ତ ତଳେ ପାପ-      ତାପ ଶୋକ ଭୟ
ଜୀବନ ହେବ ମୋ ସିନା      ସଦାନନ୍ଦମୟ ।

ବରଗଡ଼
ତା୨୯ । ୯ ।୪୧



# ଶଡ଼ଚାଳିଶ

ହେ ବରିଷ୍ଠ ମହା ସିନ୍ଧୋ !   କାହାର ଇଙ୍ଗିତ
କରେ ତୋ ବିଶାଳ ବକ୍ଷ   ସଦା ଉଦ୍-ବେଳିତ
ପାଗଳ ପରିଏ ଛୁଟି   ଆସୁ ବେଳା ପାଶେ
ଈଶ୍ୱର ସକଳ ସୃଷ୍ଟି   ସଂହାରିବା ଆଶେ
ଉତ୍ତାଳ ତରଙ୍ଗ ଭଙ୍ଗେ   ହେ ରୁଦ୍ର ମହାନ
ଆପେ ଆପଣାକୁ ଭାବି   ଅତି ବଳୀୟାନ,
ଗ୍ରାସିବାକୁ ନିମିଷକେ   ସୃଷ୍ଟିର ସକଳ,
କିନ୍ତୁ କିପାଁ ଯାଉ ଫେରି   ହୋଇ ହୀନ ବଳ ?
ନ ପାରୁତ ତିଳେ ଲଙ୍ଘି   ବେଳାଭୂମି ପାର
ବିଫଳ ପ୍ରୟାସେ ମୁଣ୍ଡ   ପିଟୁ ବାରମ୍ବାର ।
ରୋଧିଛି ତୋ ଗତି ପଥ   କାହାର ଇଙ୍ଗିତ
କାହାର ଇଙ୍ଗିତେ ପୁଣି   ହେଉ ତୁ ଚକିତ ?
କିଏ ସେହି ବିଶ୍ୱ ସ୍ରଷ୍ଟା   ନ ପାରେଁ ତ ବୁଝି
ବିସ୍ମୟ ପୁଲକେ ନେଇ   ପଡ଼େ ମୋର ବୁକ ।

ପୂରି
ତା୧୧।୧୧।୪୧



# ଅଣଚାଳିଶ

ଭବିଷ୍ୟତ ଦେଖିବାକୁ ନାହିଁ ମୋର ବଳ
କହିବ କେସନେ କେଉଁ କାର୍ଯ୍ୟ ମୋ ବିଫଳ ?
ବିଫଳତା ବୋଲି ଯାହା ଦିଶେ ଜନ ନେତ୍ରେ
ନୁହଇ କି ସଫଳତା ତାହା ଅନ୍ୟ କ୍ଷେତ୍ରେ ?
ସକଳ ନିୟନ୍ତା ସେହି ଅଜ୍ଞେୟ ଶକତି
ଅଦୃଷ୍ଟ ବୋଲିବା ତାକୁ ବୋଲିବା ନିୟତି ।
ମାନବର ସୀମାବଦ୍ଧ ଦୃଷ୍ଟି ପର ପାରେ
ସେ ଅଦୃଷ୍ଟ ଶକ୍ତି ବ୍ୟସ୍ତ କାର୍ଯ୍ୟ କରିବାରେ ।
ମାନବର ଭାଗ୍ୟ ଡୋରି ନିଜ ହସ୍ତେ ଧରି
ଚଳାଏ ମାନବେ ସେହୁ ଜିଉନକ ପରି ।
କ୍ଷଣକେ ହସାଏ ପୁଣି କ୍ଷଣକେ କନ୍ଦାଏ
ନଟ ପରି ରଙ୍ଗମଞ୍ଚେ ସତତ ନଚାଏ ।

ତା ଇଙ୍ଗିତେ ନର ନାଚେ କେବେ ସ୍ୱଜା ବେଶେ
ଭିକ୍ଷୁକ ପଣ୍ଡଏ ପୁଣି ବୁଲେ ବେଶେ ବେଶେ
ବିଶ୍ୱ ରଙ୍ଗମଞ୍ଚ ପଛେ ସେହୁ ସୂତ୍ରଧର
ତା ଇଙ୍ଗିତେ ରଚେ ନାଟ୍ୟ ନାରୀ ଅବା ନର ।
ତା ଇଙ୍ଗିତେ ସବୁ କର୍ମ ଯେଣୁ ନିୟନ୍ତ୍ରିତ
ବିଫଳ ପ୍ରୟାସେ କିଆଁ ହେବ ମୁଁ ବ୍ୟଥିତ ?

ବରଗଡ଼
ତା ୨୨ । ୧୧ । ୪୧



# ଅଣଚାଶ

ଆସିଲା ପ୍ରେୟସୀ ଯେବେ ସୁଗଭୀର ସ୍ପନ୍ଦେ
ଉନ୍ମାଦନାମୟୀ ସୁପ୍ତ ଭର୍ ଓଷ୍ଠ ପାନ୍ଥେ ।
ସ୍କନ୍ଧେ ଥାପି ସୁକୋମଳ ବାହୁ ଲତା ତାର
କହିଲା ହେ ପ୍ରିୟ ! ନିଅ ପ୍ରୀତି ଉପହାର ।
ଅଧରେ ଢାଳିଲା ସୁଧା ସସ୍ନେହ ଚୁମ୍ବନେ
ହିମ ଅଙ୍ଗ କଲା ତପ୍ତ ଗାଢ଼ ଆଲିଙ୍ଗନେ ।
ପଡ଼ିଲି ଭୁଲାଇ ତାର ବକ୍ଷେ ରଖି ମଥା
ଭୁଲିଗଲି ସଂସାରର କ୍ରୂର ବାସ୍ତବତା ।
କହିଲି ମୁଁ ଭାବାବେଶେ "ହେ ପ୍ରିୟସି ମୋର
ବାନ୍ଧ ଯେତେ ଦୃଢ଼େ ପାର ପୀରତିର ଡୋର ।
ସେ ବନ୍ଧନ ହେବ ମୋର ସ୍ୱରଗ ସମାନ
ନ ଲୋଡ଼ଇ ମୁକ୍ତି ଅବା ଅନ୍ୟ ପ୍ରତିଦାନ ।"
ଚିପିଧରି ତା କୋମଳ ବକ୍ଷେ ମୋର ମଥା
ପ୍ରେମ ଗଦ ଗଦ ସ୍ୱରେ ଭାଙ୍ଗି ନୀରବତା
କହିଲା ସେ ଚୁପି ଚୁପି "ନିଅ ସଖା ନିଅ
ଯାଚି ଦେଲି ସକଳ ମୋ ତବ ପଦେ ପ୍ରିୟ ।"

ପୂସ୍ପି

ତା ୨୫ । ୧୧ । ୪୧



# ପଚାଶ

ଜୀବନ ମରୁପଥେ　　ଯାଉ ମୁଁ ଥିଲି ଧାଇଁ
ଦେଖିଲି ଆଗେ ଆଉ　　ପଥ ତ ଦିଶୁ ନାହିଁ ।
ନିବିଡ ଅନ୍ଧକାରେ　　ଯାଇଛି ବାଟ ବୁଡ଼ି
ଭାବିଲି ଆସି ଏଥେଁ　　ଗଲିକି ପଥ ହୁଡ଼ି ?
ଫେରିବା ପାଇଁ ପଛେ　　ଦେଲି ମୁଁ ଯେବେ ଚାହିଁ
ଆସିଲା ବାଟ ମୋର　　ଦେଖିଲି ଦିଶୁ ନାହିଁ ।
ଦୃଷ୍ଟିର ଅଟ୍ଟହାସେ　　ସକଳ ପଦ ଚିହ୍ନ
ଯାଇଛି ଲିଭି ମୋର　　ହେଲି ମୁଁ ଉଦବିଗ୍ନ ।
ଉଠିଲା କଳା ମେଘ　　ବହିଲା ଅଣଶ୍ୱାସ
ହଟିଲା ଅଙ୍ଗୁ ବଳ　　ତୁଟିଲା ମନୁଁ ଆଶ ।
ଆଗକୁ ଅବା ପଛେ　　ପାରିଲି ନାହିଁ ଚାଲି
ଉଡ଼ିଲା ବାୟୁ ସାଥେ　　ସଜୋରେ ମରୁ ବାଲି ।

ଭୀଷଣ ବିପଦରେ ହେଲି ମୁଁ ଅସ୍ତବ୍ୟସ୍ତ
କହିଲି 'ରକ୍ଷ ପ୍ରଭୋ ! କଲି ମୁଁ ଏବେ ନ୍ୟସ୍ତ—
ତୁମରି ପଦତଳେ ସକଳ ଅଭିମାନ
ଲୁହେଲି ତୁମ ବଳେ ଘିନା ମୁଁ ବଳୀୟାନ ।'
ଦେଖିଲି ସହସା ମୁଁ ଦୁର୍ଦ୍ଦିନ ଗଲା ତୁଟି
କନକ କର ପୁଞ୍ଜି ଗଗନେ ଗଲା ଫୁଟି ।
ଦେଖିଲି କ୍ଷଣେ ଆଗେ ପଥ ମୋ ଝକଝକ
ଧାଇଁଲି ଆଗେ ମୁହିଁ ନ ରଖି ଚିନ୍ତା ଦକ ।
ଦୁସ୍ତର ମରୁ ପଥେ ଅକ୍ଲେଶେ ହେଲି ପାର
ବର୍ଷିଲା ଶିରେ ଯେବେ ତୁମରି କୃପା ଧାର ।

ଜଗଦଳ ପୁର
( ପୂର୍ବ ଭଲ )
ତା ୨୭ । ୧୧ । ୪୧



## ଏକାବନ

ଅନନ୍ତ ସାଗର ବକ୍ଷେ କ୍ଷୁଦ୍ର ତରୀ ବାନ୍ଧ
ଶୀକର ଶିକ୍ତ ସମୀରେ ତନୁ ଅବଗାହ୍ନ ।
ଆସିଲା ସେ ଭାସି କେଉଁ ସରଗର ପରୀ
ଫୁଲେ ଫୁଲେ ମଧୁ ଖୁଜି ପ୍ରଜାପତି ପରି ।
ଉଡୁଥିଲା ସମୀରେ ତା ଶୁଭ୍ର କ୍ଷୀଣ ବାସ
ଅସମ୍ଭାଳେ ଫିଟି ପଡୁଥିଲା କେଶ ପାଶ
ଅଧରେ ଉଛୁଳୁ ଥିଲା ମୃଦୁ ସ୍ମିତ ହାସ୍ୟ
ଆଲୋକେ ଝଟକୁ ଥିଲା ଚାରୁ ସ୍ନିଗ୍ଧ ଆସ୍ୟ ।
ମୁଗ୍ଧ ନେତ୍ରେ ଚାହିଁ କବି ହେଲା ଆତ୍ମହରା
ଦୂରେ ଘୁଞ୍ଚିଗଲା ତାର ଦୁଃଖ ଦୈନ୍ୟ ଜରା
ଅଙ୍କୁର ଉଠିଲା ନବ ଯଉବନ ଅଙ୍ଗେ
ମଲୁଥିଲା ଯେହ୍ନୁ ଯୁକ୍ତି ବାସ୍ତବତା ସଙ୍ଗେ
ଦଗ୍ଧ ରହୁ ଥିଲା ତାର ଚିତା ଭସ୍ମ ଖାଲି
ଶୁଖି ଥିଲା ଉସ୍ର ପଡ଼ି ଥିଲା ମରୁ ବାଲି ।

ବାଜିଲା ତା କାନେ କାର କୁହୁକ ମନ୍ତର
ମୃତ ପ୍ରାଣେ ବହିଲା ତା ଜୀବନରେ ଝର
କହିଲା "ଆସ ଗୋ ମୋର କଳ୍ପନା ସୁନ୍ଦରୀ !
ଖୋଜୁଥିଲି ତୁମକୁ ମୁଁ କେତେ ଯୁଗ ଧରି
ଭେଟିଲି ମୁଁ ଅବଶେଷେ ଏହି ବେଳା ତୁମେ
ଜୀବନ ମରୁରେ ମୋର ଉତ୍ସ ପରା ତୁମେ,
ଦେଖ ଶତ କ୍ଷତ ଚିହ୍ନ ରାଜେ ମୋର ଅଙ୍ଗେ
ଲଭିଛି ଯା ଯୁଝି ଯୁଝି ବାସ୍ତବତା ସଙ୍ଗେ
ପଳିତ ହୋଇଛି କେଶ ଲୋଳିତ ମୋ ଚର୍ମ
ଭାଙ୍ଗି ଅଛି ଧନୁ ମୋର ଛିଣ୍ଡି ଅଛି ବର୍ମ
ତୁମରି ଉଦ୍ଦେଶେ ତେଣୁ ଆସିଛି ମୁଁ ଧାଇଁ
ତୁମ କର ସ୍ପର୍ଶେ ଶାନ୍ତି ଲଭିବାର ପାଇଁ ,
ସିଞ୍ଚ ଦିଅ ପ୍ରାଣେ ମୋର ମୃତ ସଞ୍ଜୀବନୀ
ଯୁଗେ ଯୁଗେ ଗାଇବି ମୁଁ ତବ ଆଗମନୀ ।"

ପୁଷ୍ପ
ତା ୧ । ୧୨ । ୬୧



# ବାଉଳ

ସଞ୍ଜ ବେଳାର କୁଞ୍ଜ କଳଟି
ଝାଉଁଳି ପଡଇ ଯେବେ
ତବ ଆଗମନ ପଥ ଚାହିଁ ବସେ
ବାତାୟନ ପଥେ ତେବେ ।
ପ୍ରତୀଚ ଗଗନେ ବୁଡ଼ି ଯାଉଥାଏ
ଲୋହିତ ବରଣ ରବି
ମାନସ ମୁକୁରେ ପ୍ରତିଫଳେ ସଖା
ତୁମର କରୁଣ ଛବି ।
ବିରହୀ ପରାଣେ ଜାଗି ଉଠେ ମମ
କରୁଣ ଲୋହିତ ବ୍ୟଥା
ତୁମରି ଉଠେ ମୋ ସ୍ମୃତି ପରଣେ
ଅକୁହା ଗୁପତ କଥା ।
ନୟନୁ ଝରଇ ଆଷାଢ ଆସାର
ତିନ୍ତଇ ବୁକୁ ବାସ
ଭାଙ୍ଗି ପଡେ ମୋ ଧଇରଯ ଗିରି
ତୁଟି ଯାଏ ମନୁ ଆଶ ।

ଦୂର ନଭ କୋଣେ ସଞ୍ଜ ତାରାଟି
ମିଟି ମିଟି ଚାହେଁ ମୋରେ
ଜାଳି ଦିଏ ପୁଣି ଆଶାର ଆଲୋକ
ନିରାଶ ମୋ ହୃଦ ପୁରେ ।
ସାନ୍ଧ୍ୟ ସମୀରେ ଭାସି ଆସେ ତବ
କରୁଣ ମୁରଲୀ ତାନ
ନବୀନ ଆଶାରେ ମୁଞ୍ଜୁରି ଉଠେ
ଶୁଷ୍କ ହତାଶ ପ୍ରାଣ ।
ମଉଳା ଅଧରେ ଫୁଟି ଉଠେ ମମ
ସରସ ମଧୁର ହାସ
ଅନ୍ତରେ ମମ ନିରେଖେଁ ପ୍ରିୟ
ତୁମରି ମିଳନ ରାସ ।
ଧରଣୀ ଉପରୁଁ ଲିଭି ଯାଉ ଥାଏ
ଆଲୋକର ଶେଷ ଜ୍ୟୋତି
ଅନ୍ତରେ ମମ ଫୁଟି ଉଠୁଥାଏ
ସତ ଦରଭୁଲା ସ୍ମୃତି ।
ନୋହୁ ପଛେ ଯେବେ ଜୀବନରେ ଦେଖା
ସ୍ମୃତି ମାତ୍ର ଥାଉ ଜାଗି
ଭକ୍ତ ପରାଣେ ଚାହିଁ ବସିଥିବି
ନବା ରାତି ତବ ଲାଗି ।

ସୁଷ
ତା ୧୭ । ୧୨ । ୪୧



# ଶେପନ୍ଥ

କେତେ ଯୁଗ ଯୁଗ ଗଲାଣିତ ବିତ
ଅଛି ସେ ଦେଉଳ ଠିଆ
କେତେ ଝଡ ବୃଷ୍ଟି ବଜର ବିଦ୍ୟୁତ
ସହି ଗଲାଣି ତା ହିଆ ।
ନାହିଁ ଇଟା ଚୂନ ସିମେଣ୍ଟି ଗାନ୍ଥୁନୀ
ଶିଳା ପରେ ଶିଳା ଥାପି
ଗଢିଥିଲା କେଉଁ ବିନ୍ଧାଣି ତାହାକୁ
କଇଶ୍ଚିକ ରୂପ ମାପି ।
ହଜାରେ ବରଷ ଗଲାଣିତ ବିତ
କାଳ ସ୍ରୋତେ ମିଶି କାହିଁ
ତଥାପି ଦେଉଳ ଶରୀରୁ ପଥର
ଗୋଟିଏତ ଖସି ନାହିଁ ।

ଧନ୍ୟରେ ଓଡ଼ିଆ ବନ୍ଧାଣି ତୋହର
କାରିଗର କରାମତ
ଶିଳ୍ପ ଜଗତେ ଉଡ଼ାଉଛି ଯାହା
ଓଡ଼ିଶାର ବୈଜୟନ୍ତୀ ।
ପାଷାଣର ଗାତେ ଗଢ଼ିଥିଲୁ ତୁହି
ନିହାଣ ମୁନରେ ଖୋଳି
ଯେଉଁ ଗୃରୁ କାମ ସୂକ୍ଷ୍ମ ଗୃରୁ କଳା
ଧରି କି ଅମର ତୂଳ ।
କାଳର ଗରଭେ ଗଲାଣି ମିଳାଇ
ମର ଦେହ ତୋର କାହିଁ
କିନ୍ତୁ ତୋ ଅମର ନିହାଣ ମୁନର
କରତ ତ ମରି ନାହିଁ ।

ଘୋରଡ଼ିଆ ଡାକ ବଙ୍ଗଳା
ତା ୧୮ । ୧୨ । ୪୧



# ରଉ୍ବନ

ଘାଣ୍ଟି ବହୁ ତର୍କ ଶାସ୍ତ୍ର    କରି ବହୁ ଯୁକ୍ତି
ନ ପାରିଲି ଖୋଜି ବାଟ    କାହିଁ ମୋର ମୁକ୍ତି ।
ଅନ୍ଧ ପରି ଦଉଡ଼ିଲି    ହଜାଇ ଲଉଡ଼ି
ଆଣ୍ଠୁ ଗଣ୍ଠି ଗଲା ଛିଡ଼ି    ଦଉଡ଼ି ଦଉଡ଼ି ।
ତଥାପି ପାଇଲି ନାହିଁ    ମୋ ହଜିଲା ଧନ
ଧାଇଁବାର ପରିଶ୍ରମ    ହେଲା ଅକାରଣ ।
ଭଗ୍ନ ପ୍ରାଣେ ଧାଇଁଲି ମୁଁ    ଅଶ୍ରୁ ଭରି ନେନେ
ବିଶ୍ୱାସ ପ୍ରଦୀପ ଜାଳି    ଦେଲି ହୃଦ କ୍ଷେନେ ।
ସହସା ଦିଶିଲା ଆଗେ    ବାଟ ଜକ ଜକ
କହିଲା କେ କାନେ କାନେ 'ତେଜ ଚିନ୍ତା ଦକ ।
ଜାଣିବାକୁ ଚାହିଁ ଯେବେ    କାହିଁ ତବ ମୁକ୍ତି
ବିଶ୍ୱାସର ପନ୍ଥା ଧର    ତେଜି ତର୍କ ଯୁକ୍ତି ।
କହିଲି ମୁଁ କ୍ଷୁବ୍ଧ ପ୍ରାଣେ    କରି ଅଭିମାନ
'ତେବେ କିମ୍ପା ଦେଲ ମୋରେ    ତର୍କ ବୁଦ୍ଧି ଜ୍ଞାନ ।'

ବଣ୍ଟାସର ପଥେ ଯିବ          ଯେବେ ଅବସର
କବା ଲୋଡ଼ା ଏତେ ଶ୍ରମେ  ଜ୍ଞାନ ଲାଭ କର ?'
କହିଲା ସେ ହସି 'ତେଜ     ବୃଥା ଅଭିମାନ
ଅନନ୍ତ ଜ୍ଞାନର ସିନ୍ଧୁ         ଭୁଲେ ତବ ଜ୍ଞାନ
ଗ୍ରହିଁ ଦେଖ କେତେ କ୍ଷୁଦ୍ର      ବାଲୁକା ସମାନ
ସାନ୍ତ ଜ୍ଞାନେ ପାଇବ କ       ଅନନ୍ତ ସନ୍ଧାନ ?
ଜ୍ଞାନର ବନ୍ଧନ ଜାଳ         ବଣ୍ଟାସର ପଥ
ବୃଥା ଅହଙ୍କାର ତେଜ         ଗ୍ରନ୍ଥ ଅବରତେ
ମାନବ ନଶ୍ବର ତନ          ଜୀବନରେ ମୁକ୍ତି,
ଲଭେ ପରାଭବ ଯହିଁ         ବୃଥା ତର୍କ ଯୁକ୍ତି ।'

ବୋଲଣ୍ଡିଆ ଡାକବଙ୍ଗଳା
୧୮ । ୧୨ । ୪୧



# ପଞ୍ଚାବନ

ଧୂଳିର ମୋ ଖେଳଘର — ନ ଭାଙ୍ଗ ନ ଭାଙ୍ଗ
ଧୂଳିଖେଳ ଏବେ ମୋର — ହୋଇନାତ ସାଙ୍ଗ
ଧୂଳିରେ ରଚୁଛି ମୁହିଁ — ନିତନ ପ୍ରାସାଦ
ଧୂଳି ଖେଳେ ପାଉଛି ମୁଁ — କେତେ ଆହ୍ଲାଦ
ଧୂଳିର ଦେବତା ଆଗେ — କରୁଛି ମୁଁ ପୂଜା
ଧୂପ ଦୀପ ନଇ-ବେଦ୍ୟ — ନାହିଁ ମୋର ଖୋଜା
ଅନ୍ତରର ନଗାଡ଼ା ଦଏଁ — ଭକ୍ତି ବାର ତାଳ
ଶଙ୍ଖ ଘଣ୍ଟା ନାହିଁ ମୋର — ମାତରେଁ କରତାଳି
ନାହିଁ ମୋ କାମନା କିଛି — ନ ମାଗେ ମୁଁ ବର
ପୂଜାଫଳ ଭୋଗିବାକୁ — ନାହିଁ ଅବସର ।
ଧୂଳିରୁ ଜନମ, ଦେହ — ଧୂଳିରେ ମୁଁ ଲୀନ
ଧୂଳି ଖେଳି ଖେଳି ମୋର — ସରି ଯିବ ଦିନ,
ଦିନାନ୍ତେ ଆସିବ ଯେବେ — ଘୋଟି ମହା ନିଶା
ଶେଷ ଅନ୍ଧାରେ ଯାତ୍ରା ମୋର — ଯିବ ସିନା ମିଶି,
ଧୂଳିର ମୋ ଖେଳ ତେବେ — ହେବ ଅବସାନ
ଭାଙ୍ଗି ଦେବ ତେବେ ସିନା — ଖେଳଘରକୁ ମାନ !



# ସ୍ୱପନ

ଜୀବନର ଯେତେ ଦିନ       ହୋଇଛି ଅତୀତ
ସପନ ପରାଏ ମୋତେ       ହୁଅଇ ପ୍ରତୀତ;
ମୁହାଁଇଛି କେତେ କେତେ       ନୂଆ ପରିସ୍ଥିତି
ଜାଗିଛି ପରାଣେ କେତେ       ଶଙ୍କା ଦକ ଭୀତି,
ଦାରୁଣ ବେଦନା ଭରେ       ହୋଇଛି ଜର୍ଜର
ଚାଖିଛି ତ ପୁଣି ଧନ୍ୟ       ସୁଖ ମିଳନର
ନୈରାଶ୍ୟର ଝଞ୍ଜା ପ୍ରାଣେ       ସହିଛି ତ ବହୁ
ଦଷାଦର ଦୁନ୍ଦ୍ର ତାପ       ଯାଇଛି ମୁଁ ସହି
ହରଷିଛି ହେରେ ପୁଣି       ଆଶା ବାରିଧାର
ଯୋଡ଼ିଛି ମୁଁ ବସେ ପୁଣି       ଛିନ୍ନ ବୀଣା ତାର
ଥରକେ ଲଭିଛି ମୁହିଁ       ସ୍ୱାଦ ଅମୃତର
ଅନ୍ଧାରେ ଝୁରିଛି ପୁଣି       ଆଲୋକ ନିର୍ଝର

ବୁଲିଛି ମୁ କେତେ ଗିରି କାନ୍ତାର କନ୍ଦର
ଦେଖିଛି ମୁଁ ପ୍ରକୃତିର ଶୋଭା ମନୋହର
ଜୀବନେ ଲଭିଛି କେତେ ବିଷାଦ ହରଷ
ଲଭିଛିଁ ତ କେତେ ଅନୁ-ଭୂତିର ପରଶ;
ଉତ୍ଥାନ ପତନ ମଧ୍ୟେ କରିଛି ମୁଁ ଗତି
ଲଭିଛି ପ୍ରେରଣା ପୁଣି ନୂତନ ଶକତି,
କାହାର କରୁଣା ବଳେ ? ନ ପାରେ ମୁଁ ବୁଝି
ଧନ୍ୟସ୍ୱରେ ସିନା ଖାଲି ଆଖି ପଡେ ଲୁଜ !

[illegible]

ତା ୨୯ । ୧୨ । ୪୧



## ସମ୍ଭାବନ

ଉତ୍କଳ ସୁତ ଯେଏ ଯହିଁ ଅଛ
ଆସ ଆସ ଆଜି ଧାଇଁ
ଜନ୍ମ ଭୂମିର ଶୀର୍ଣ୍ଣ ଶରୀରେ
ନୂଆ ବଳ ଦେବା ପାଇଁ ।
ଭାଙ୍ଗିଛି ଅଣ୍ଟା ଛିଣ୍ଡିଛି ପାଦ
ମୁଣ୍ଡ ଯାଇଛି କାଟି
ତଥାପିରେ ଆଜି ଓଡ଼ିଆ ପରାଣୁ
ସାହସ ଯାଇନ ହଟି ।
ସିଂହ ଭୂମି ଢୋ ଗନ୍ତା ଦାରକି
ଲୁଟି ନେଇଛନ୍ତି ରେ ପର
ବନ୍ୟା ମରୁଡ଼ି ଦୁର୍ଭିକ୍ଷ ଦାଉ
ଭାଙ୍ଗି ଦେଇଛି ଘର ।

ହୋଇଛନ୍ତୁରେ ଦେଶୁ କଙ୍କାଳ ଦୀନ
ବୀର ଓଡ଼ିଆ ଜାତି
ପେଟ ଗଁଣ୍ଡିକ ପାଇଁ ତୁ ବୁଲୁଛୁ
ପର ଘରେ ହାତ ପାତି ।
ଯାଇଛି ତ ସବୁ ନ କର ଦୁଃଖ
ପୁଣି ଉଠ ଛିଡ଼ା ହୁଅ
ନୂଆ ଉଦ୍ୟମେ କରହେ କର୍ମ
ସକଳ ଓଡ଼ିଆ ପୁଅ ।

-ରଚିତ
୯ । ୯ । ୬୯



# ଅଠାବନ

ମନେ କି ପଡେ ସଖି !　　ସେଦିନ କଥା ?
ଦେଲ୍ ଗୋ ଯେବେ ପୋଢ　　ସଲାଜେ ମଥା
ଜଢେଖି ମୋତେ ତବ　　ଅତ ନିକଟେ
　　—ସାଗର ତଟେ ।

ଯବା ଅଧରୁ ସ୍ମିତ　　ପଡ଼ିଲା ଝରି
ବୁକୁର ଝୀନବାସ　　ଉଠିଲା ଥରି
ଉଠିଲା ପାଦ ଗଲା　　ତହିଁ ଅଟକି
　　—ଗଲ ଚମକି ?

କପୋଳେ ପାଟଳିମା　　ଦେଲା ଗୋ ଦେଖା
ନେତ୍ରେ ଉଠିଲା ଫୁଟି　　ବଜୁଙ୍କ ରେଖା
ହିନ୍ଦୁ ସମୀର ଶିରୁଁ　　ଟଳିଲା ଗୋ ! ହରି
　　—ଝୀନ ଉତ୍ତରୀ ।

ପୁଣି ଗୋ ଦେବାଲାଗି ଉତ୍ତରୀ ଶିରେ
ଉଠାନ୍ତେ କର, ଉଡ଼ି ଗଲା ସମୀରେ—
ଉନ୍ନତ ବକ୍ଷୁଁ ତବ ଝୀନ ବସନ
—ହେଲ ଉଚ୍ଛନ୍ନ !

ନ ପାଇ ଆନଗତ ପଡ଼ିଲ ନଇଁ
ଦେଖି ଏ ଚାରୁ ଶୋଭା ସହସା ବହି—
ଗଲା ପୁଲକ ବନ୍ୟା ଅନ୍ତର ପୁରେ
—ଗଲି ମୁଁ ବୁଡ଼ିରେ ।

ଧାଡିକୁ ଫେରି ଯେବେ ଦେଲି ମୁଁ ଚାହିଁ
ସେ ଅପରୂପ ଶୋଭା ଦେଖିଲି ନାହିଁ
ଜନ ସାଗରେ କାହିଁ ଗଲାଣି ମିଶି
—ଆଉ ନ ଦିଶି ।

ମାନସ ପଟେ ଚିତ୍ର ସେ ତନୁ ଛବି
କଳ୍ପନା ନେନେ ଯେବେ ନଚେ ଖେଳି
ଭାବ ଆବେଶେ ଉଠେ ହୃଦୟ ଥରି
—ପୁଲକେ ଭରି ।

ପୁରୀ
ତା ୨୮ । ୧୨ । ୪୧



# ଅଷ୍ଟଷଠି

ଏଇପରି ସେହି ସାଗର ବେଳା
ସାଗର ବେଳା,
ଲାଗୁଥିଲା ଯହିଁ ଅତୀତ ଯୁଗରେ
ସାଧବ ପୁଅର
ବୋଇତ ମେଳା
ସାଗର ବେଳା ।

ବସୁଥିଲା କେତେ ଗନ୍ଧକୀ ବେପାରୀ
ଜମ୍ବୁ ଦ୍ୱୀପର
[illegible] ମେଳା
ସାଗର ବେଳା ।

ଆଜି ସେହିସବୁ ଧନ ଗଉରବ
କାଳ ଗର୍ଭେ କି ହୁଁ
ବିଲୀନ ହେଲା
ସାଗର ବେଳା ।

ଭଙ୍ଗୁର ଭବରେ ଯାଇଛି ତ ଭାଙ୍ଗି
ସାଧବ ପୁଅର
ବୋଇତ ମେଳା
ସାଗର ବେଳା ।

ପୁରୀ
ତା ୩୧ । ୧ । ୪୧



# ଶାଠିଏ

ମରଣ ସିନ୍ଧୁ ତୀରେ
ଲାଗେ ଯାଏ ଯେବେ ଜୀବନ ତରୀଟି
ଭାସି ଭାସି କାଳ ନୀରେ,
ବହେ ଅଣଚ୍ଛଶ ବାୟୁ
ଛିଣ୍ଡି ଯାଏ ପାଲ ଜୀର୍ଣ୍ଣ ତରୀଟି
ସମ୍ଭାଳି ନୋହେ ଆଉ ।
ଢେଉ ପରେ ଢେଉ ଆସି
ଜୀର୍ଣ୍ଣ ତରୀର ଶୀର୍ଣ୍ଣ ଶରୀର
ଅବହେଳେ ଦଏ ଗ୍ରାସି;
କାଳର କରାଳ ଗର୍ଭେ
ଲୀନ ହୋଇଯାଏ ଜୀର୍ଣ୍ଣ ତରୀଟି
ରହୁଁ ରହୁଁ କାହିଁ ଲଭେ ।

ନୂଆ ତର ପୁଣି ବାନ୍ଧ
ଚଳାଇ ନାବକ କାଳ ସିନ୍ଧୁରେ
ଯନ୍ତ୍ରକୁ ନ ଫେର ଗୃହୁଁ ।
କାଳର କୁଟୀଳା ରୀତ
ଭସାଏ ବୁଡ଼ାଏ ଅଗଣିତ ତରୀ
ଏହ୍ନ ପର କଥ କଥ ।

ଘୋରଡ଼ିଆ ଡାକ ବଙ୍ଗଳା
ତା । ୧୨ । ୧ । ୪୨



# ଏକଷଠି

ଜୀବନପଥରେ ପଦେ ପଦେ
କାହିଁକି ଅନୁତାପ
ତୁମର କରୁଣା
ସମ୍ପଦେ ଅବା ବିପଦେ ।

ବିପଦର କଷାଘାତେ
ଧୈର୍ଯ୍ୟ ଅଞ୍ଜଳି
. . .
ପଡ଼େ ଯେବେ ଭାଙ୍ଗି
ମିଶି ଯାଏ ଧୂଳି ସାଥେ ।

ଭାବଇଁ ମୁଁ ବସି ଆହା !
ଏ ବିପଦ ସିନ୍ଧୁ
ଦଉଡ଼ି ଯିବାକୁ
ନାହିଁ ପର କିଛି ସାହା ।

ତୁମେ ହୋଇ କର୍ଣ୍ଣଧାର
କରି ନାଅ ପାରି
କରୁଣା ଭାବରେ
ବିପଦର ପାରାବାର ।

ବୁଡାଇ ଦିଅ ହେ ଯେବେ
ବିପଦ ସାଗରେ,
ଭାବଇଁ ଚକିତେ
ମରି ଗଲିଣି ମୁଁ ଏବେ ।

କିନ୍ତୁ ସେ ସାଗର ତଳେ,
ନିରେଖଇଁ ଯେବେ
ମୁକୁତା ପ୍ରବାଳ,
ଆହ୍ଲରେ ମୁଁ କୁଡୁହଲେ ।

ଧରି ତବ କୃପା ଡୋରି
ଉଠି ଆସେ ପୁଣି
ଧନ ରତ୍ନ ସାଥେ
ବିପଦ ଗର୍ଭୁ ଉତୁରି ।

ଭାବେ ତେବେ ସିନା ଯାଇଁ
ବୁଡାଇ ଥିଲ ହେ
ବିପଦ ସାଗରେ
ମୋହର ମଙ୍ଗଳ ପାଇଁ,

ଅନ୍ଧ ପରି ହୋଇ ଯଦି
ଭବିଷ୍ୟ ନ ଦେଖି
                    ପାରେ ନାହିଁ ବୁଝି
                    କିବା ତବ ଅଭିସନ୍ଧି
ତେବେ କାହିଁ ଲାଭ ହେବ ?
ସୁଖ ଅବା ଦୁଃଖ
                    ଯା ଆସୁ ପଶ୍ଚେଣେ
                    ସାଦରେ ମୁଁ ବରି ନେବି ।

[illegible] ଡାକବଙ୍ଗଳା
୨୧୨ । ୧ । ୭୧



# ବାଆଶଠି

ସ୍ୱର୍ଗ ଯଦି ମିଳେ କରୁ          କଳପନା ଖାଲି
ନନ୍ଦନରେ ପରିଣତ          ହୁଏ ମରୁ ଡାଲି
ନ କରିବ ତେବେ ବସି          କହାଁ କଳପନା!,
ସ୍ୱର୍ଗର ପରଶ ଯଦି          ଦିଏ ସେ ଭାବନା ?
ବାସ୍ତବତା ସଙ୍ଗେ ଯୁଝି          କ୍ଷତ ପୂର୍ଣ୍ଣ ଦେହେ
ଫେରେ ଯେବେ ଭଗ୍ନ ପ୍ରାଣେ          କଳପନା ଗେହେ
ସାଦରେ ପାଣ୍ଠୋଟି ନିଏ          ମୋ କଳ୍ପନା ପ୍ରିୟା
ଶାନ୍ତିର ପରଶ ଲଭେ          ସନ୍ତାପିତ ହିଆ;
ଭୁଲାଇ ପକେଇ ମୁଁ ରଖି          ପ୍ରିୟା କୋଳେ ମଥା
ନିମିଷେ ପାଶୋରି ଯାଏ          ସକଳ ମୋ ବ୍ୟଥା ।
ଅଧରେ ମୋ ଅଧର ଯେବେ          ରକ୍ତ ସ୍ୱର୍ଗ ପାଏ
ନ ରହେ ମୋ ଦେହେ ମନେ          କ୍ଲାନ୍ତ କ୍ଲେଶ ମାତ୍ର,
ଆନନ୍ଦ ପ୍ରବାହ ଖେଳେ          ରକ୍ତ ମୋ ଜୀବନେ
ଲିଭେ ଯେବେ ପ୍ରିୟା ମୋର          ଗାଢ଼ ଆଲିଙ୍ଗନେ ।

"ବାନ୍ଧ ଗୋ ନବଢଙ୍ଗେ ପ୍ରିୟେ ! ବାହୁ ପାଶେ ତବ
ସ୍ୱରଗର ସୁଖ ଯହିଁ କରେ ଅନୁଭବ,
ନ ଲୋଡ଼େ ମୁଁ ଫେରିବାକୁ ବାସ୍ତବ ସଂସାରେ
ମିଳେ ଯେତେ ସୁଖ ଶାନ୍ତି ତୁମରି ଆଗାରେ
କୋମଳ ବୁକୁରେ ତବ ରଖି ମୋର ମଥା
ଶୋଇଥିବ ଚିର ଦିନ ଭୁଲି ବାସ୍ତବତା ।"

ଟୋପଡ଼ିଆ ଡାକବଙ୍ଗଳା
ତା ୧୮ । ୧ । ୪୧



## ତେଷଠି

ଗଢ଼ିଥିଲା କେଉଁ ଯୁଗେ
ସେ କେଉଁ ବଢାଣି
ଭ୍ରୂ ଯୁଗେ ନଦ୍ଧତ କରି
ସୁବଙ୍କିମ ଠାଣି,
ଅଧରେ ଖେଳାଇ ଥିଲା
ମୃଦୁସ୍ମିତ ହାସ୍ୟ
ମୁଗ୍ଧ ଭାବେ ଉଦ୍ଭାସିତ
ଚାରୁ ଶୁଭ୍ର ଆସ୍ୟ,
ସମୁନ୍ନତ ଘନ ବକ୍ଷେ
କର ଯୁଗ ଥାପି
ହୃଦୟେ ଶଙ୍କର ମୂର୍ତ୍ତି
ଧରି ଥିଲା ଚାପି,
ଆଣ୍ଠୁ ମାଡ଼ି ବସି ଅବା
ମାଗୁଥିଲା ବର
ବଦେଶୁଁ ଫେରିବ କେବେ
ହୃଦୟ ଈଶ୍ୱର,

ମିଳନ ପୁଲକେ ପ୍ରାଣ
ଉଠୁଥିଲା ଭରି
ଅଲକ୍ଷେ ଅଧରୁ ସ୍ମିତ
ଝରୁଥିଲା ଝରି,
ଧନ୍ୟ ଶିଳ୍ପି ! ଗଢିଛି ଯା
ତୋ ନହଣ ମୁନ
କ୍ରୂର କାଳ କରି ପାରି
ନାହିଁ ତାକୁ ଖୁଣ,
ଅସ୍ଥି ମାଂସ ସିନା ତୋର
ଯାଇଛି ମିଳାଇ
ଅନ୍ତର ନଗିତା ଭାବ
କଭୁ ମରି ନାହିଁ,
ଘନ ହୋଇ ଧରିଛି ସେ
ପାଷାଣ ମୂରତି
ହେଉ ଶିଳ୍ପି ! ହେଉ ମୋର
ଅଶେଷ ପ୍ରଣତି ।*

ଦିଲ୍ଲୀ
ତା ୧୮ । ୧ । ୪୧



* ଡେଲିଙ୍ଗ ମେନେଜରଙ୍କ ବଙ୍ଗଳା ଆଗରେ
ଗୋଟିଏ ଭଗ୍ନ ପ୍ରସ୍ତର ମୂର୍ତ୍ତି ଦର୍ଶନେ —

# ଗଉଣଠି

୧

ସକଳ ଓଡ଼ିଆ ପୁଅ — ଏକ ମେଳେ ଛିଡା ହୁଅ
ଜନନୀର ଆଖି ଲୁହ
ଢଅରେ ପୋଛ
ଜନନୀ ମଳିନ ମୁଖ — ଦେଖି କି ନ ହୁଏ ଦୁଃଖ
ସକଳ ଯଶ ମୟୂଖ
ଯାଇଛି ଲୁଚି
ଅଣ୍ଟା ଭିଡ଼ି ଆସରେ ଧାଇଁ
ଜନନୀର ଦୁଃଖ ରାଶି ନାଶିବା ପାଇଁ ।

୨

ଗଳ୍ପ ଆଜି ପାଠଶାଳ — ଆମର ଗଙ୍ଗ କେଶରୀ
ଗଙ୍ଗା ଠାରୁ ଗୋଦାବରୀ
ଜିଣିଲେ ଯୁଝି
ଖଣ୍ଡାଇତ ଖଣ୍ଡାଧାରେ — ଅରାତି ଶୋଣିତ ଧାରେ
ଜନନୀ କଞ୍ଜ ପଦ୍ମରେ
ଦେଲେ ରଞ୍ଜାଇ

ସେ ବୀରତ୍ୱ ଗଲାରେ କାହିଁ
ପର ବଉକର ଆଜ ଓଡ଼ିଆ ଭାଇ ।

୩

ଆମର ଦେଉଳ ବଡ ଆମ ବାରବାଟୀ ଗଡ
ସୂଚାଇ ଦେଉଛି ଜଡ
ନୋହୁ ତ ଆମେ,
ଆମ ଦେଶ ନଦ ନଦୀ ମହାତୀର୍ଥ ମହୋଦଧି
ଗାଏ ଯଶ ଅଦ୍ୟାବଧି
ଧରମ ନାମେ
ଆମ ଦେଶ ଶିଳ୍ପି ସକଳ
ଗଢିଲେ କୋଣାର୍କ ଆଦ କେତେ
ଦେଉଳ ।

୪

ଆମ ବଡ ଦାଣ୍ଡ ଧ୍ୱଜ ଭକତରେ ଶିରେ ବୋଝ
କେତେ ସାଧକ ତ ଚଢ
ଗଲେଣି କାହିଁ,
ବ୍ୟାପେ ଆମ ଦେଶ ସାରା ଆର୍ଯ୍ୟ ସଂସ୍କୃତର ଧାରା
ବହୁଥିଲା ଦିନେ ପରା
ମନେ କି ନାହିଁ ?
ଆମେ ପରା ସେ ଦେଶ ଲୋକ
ବଦେଶୀ ଆଗରେ ଆଜ ଦୀନ
ମୁରୁଖ ।

ଶୋଭାର ପସରା ଧରି   ଶତ ଶତ ବନ ଘେରି
ହ୍ରଦ ନଦ ନଦୀ ପୂରି
ଥାଉଁ ଏ ଦେଶେ,
ଦୁର୍ଭାଗ୍ୟ ଯାଇନ୍ତୁ ଭାଙ୍ଗି   ସକଳ ସମ୍ପଦ ରାଜି
କାନ୍ଦଇ ଜନନୀ ଆଜି
ମଳିନ ବେଶେ
ଥାଉଁ ଆମ୍ଭେ ସୁତ କୋଟିଏ
ଗୁଛିବ ନାହିଁ କି ଦୁଃଖ ତାର ଗୋଟିଏ?
ହେଲାଣି ହେବାର ଯାହା   ଭାବିଲେ କି ହେବ ତାହା
ଜଗନ୍ନାଥ ହେବେ ସାହା
ଆଜି ନିଶ୍ଚୟ
ଅଣ୍ଟା ଭିଡ଼ି ଆସ ଧାଇଁ   ସକଳ ଓଡ଼ିଆ ଭାଇ
ଆଉ ତ ରେ ବେଳ ନାହିଁ
ହୁଅ ନିର୍ଭୟ
ଲାଗିପଡ଼ ନୂଆ ଉଦ୍ୟମେ
ଭାଗ୍ୟଲକ୍ଷ୍ମୀ ବଶୀଭୂତା ହେବେ
କରମେ ।

ପୁଷ୍ପ
ତା ୧ । ୨ । ୪୨



# ପଞ୍ଚଷଠି

ମଙ୍ଗଳମୟ ଅମୃତମୟ
ସେହା ଏ ବିଶ୍ୱ ସୃଷ୍ଟି
ଉନ୍ମୀଳ ନେତ୍ର ଚାହିଁ ଦେଖ ଆଜି
ଦେଇ ତୁ ଦିବ୍ୟ ଦୃଷ୍ଟି
ସଂସାରେ ଆଜି ଧ୍ୱଂସର ଯେଉଁ
ପ୍ରଳୟ ଅଗ୍ନି ଜଳେ
ମଙ୍ଗଳମୟ ସୃଷ୍ଟିର ବୀଜ
ନାହିଁ କି ଲୁଚି ତା ତଳେ ?
ଝଡ଼ ପଡ଼େ ଯେବେ କୁସୁମ କଳିଟି
ସୁଷମା ଯାଏ ଗୋ ତୁଟି
ଜନମେ ନାହିଁ କି ଗରଭେ ତାହାର
ଭବିଷ୍ୟର ବୀଜ ଗୋଟି ?
ତପ୍ତ ବୈଶାଖି ଝଞ୍ଜାରେ ଯେବେ
ପୋଡ଼ି ଯାଏ ସାରା ସୃଷ୍ଟି
ନା ପଡେ କି ଝର ଅବସାନେ ତାର
କଲ୍ୟାଣମୟି ବୃଷ୍ଟି ?

ଧ୍ୱଂସର ପରେ ପୁଣି ନୂଆ ସୃଷ୍ଟି
ଚିରନ୍ତନୀ ଏ ରୀତି
ତେବେ ରେ କପାଇଁ ଧ୍ୱଂସ ଦେଖି ତୋ
ମନେ ଜନମଇ ଭୀତ ?
ମୃତ୍ୟୁର ତଳେ ଅମୃତମୟୀ
ଦେଖରେ ନୂତନ ସୃଷ୍ଟି
ପ୍ରଜ୍ଞା ପ୍ରଦୀପେ ଉଜଳାଇ ପଥ
ଦିଅ ତୁ ଦିବ୍ୟ ଦୃଷ୍ଟି ।

ପୂର୍ଣ୍ଣ
ତା ୧୭ । ୨ । ୪୨



# ଛଅଷଠି

ତୁମର କରୁଣା କଣା,
ରହି ଅଛି ପୂର        ଅଣୁ ପରମାଣୁ
                ନ ଥିଲା ତ ମୋତେ ଜଣା ।
ଦୁଃଖ ବା ବିପଦ ଘଣ୍ଟି,
ଲାଗେ ମୋର କୂଳେ     କାଳ ସ୍ରୋତେ ଯାହା
                ବେଳେ ବେଳେ ଭାସି ଆସି,
ଜଗତର ହିତ ପାଇଁ—
ସେ ସିନା ତୁମର      ସୃଷ୍ଟି କଉଶଳ
                ବୁଝି ମୁଁ ପାରବ କାହିଁ ?
ମୁଁ ସିନା ଭାବେ ମୋ କଥା,
ଦୁନିଆ ଯାକର       କୋଟି କୋଟି ପ୍ରାଣୀ—
                —ଲାଗି ଘୁରେ ତବ ମଥା !
ମୋହ ପାଇଁ ଯାହା କଷ୍ଟ,
ହୋଇ ପାରେ ତାହା   ଆଉ କାହା ପାଇଁ
                ସୁଧା ବୋଲା ଶୁଭାଶୀଷ ।

—୧୨୦—

ଅଥବା ଅଧୁନା ଯାହା,
ବଷ ପର୍ ଲାଗେ      କେ କହୁ ପାଇବ
ଅମୃତର ବୀଜ ତାହା ?

ଅଳପ ମୋହର ଜ୍ଞାନ,
କଳନ କେସନ      ଅସୀମ, ହେ ତବ
ସୃଷ୍ଟି କଉଶଳ ମାନ ?

ଦିଅ ହେ ଶକତ ମୋରେ,
ପାଇବ ଯେସନ      ଗାଇ ତୁମ ଗାନ
ତାଳ ଦେଇ ତୁମ ସୁରେ ।

ପୁରୀ
ତା ୯ । ୨ । ୪୬



# ସପ୍ତଷଠି

ବହ୍ମାଣ୍ଡ ସୂଲକେ ଦେଖେଁ
ତୁମର ମହିମା
ସର୍ବବ୍ୟାପ୍ତ ଜଗତରେ
ନାହିଁ ଯାର ସୀମା ।
ଏ ବିରାଟ ବଶ୍ୱେ ମୁହିଁ
ଯହିଁ ଦଏ ଚାହିଁ
ତୁମର କର୍ତ୍ତୃତ୍ୱ ବିନା
ଆନ ଦେଖେ ନାହିଁ ।
ବିରାଟ ପୁରୁଷ, ତବ
ଫୁତ୍କାରେ କେବଳ
ଆଲୋଡ଼ିତ ହୁଏ କାଳ
ପାରାବାର ଜଳ ।
ଉଠି ପୁଣି ଯାଏ ମିଶି
ବୁଦ୍‌ବୁଦ ପରି
କାଳ ବକ୍ଷେ ଅଗଣିତ
ଘଟଣା ଲହରୀ ।
ମାନବର ଭାଗ୍ୟ ଡୋରି
ନିଜ ହସ୍ତେ ଧରି
ଚଳାଅ ମାନବେ ତୁମେ
କ୍ରୀଡ଼ନକ ପରି ।
ତୁମର ପ୍ରେରଣା ଲଭି
କୋଟି କୋଟି ପ୍ରାଣୀ
ଧାଉଁଥାନ୍ତି ଅବିରତ
ତୁମ ଇଚ୍ଛା ଜାଣି ।
ବିରାଟ ବ୍ୟକ୍ତିତ୍ୱ ତବ
ବ୍ୟାପ୍ତ ଜଗତରେ
ନିବେଦି ନମଇଁ ଦେବ
ତବ ଶ୍ରୀ ପଦ୍ମରେ ।

ସୁରଦେଇପୁର ଡାକବଙ୍ଗଳା
୧୧ । ୩ । ୪୨



# ଅଡ଼ଷଠି

ନ ପାରଇଁ ଜାଣି ଯେଣୁ ଭବିଷ୍ୟତ କଥା
ଅକାରଣେ କପାଁ ଲଭିବଇଁ ମନେ ବ୍ୟଥା ?
ବର୍ତ୍ତମାନ ଯାହା ମୋତେ ଲାଗୁଅଛି ଦୋଷ,
ହୋଇପାରେ ଭବିଷ୍ୟତେ ତାହା ଶୁଭାଶୀଷ ।
ସକଳ ନିୟନ୍ତ୍ରା ତୁମେ, ଜଗତ କରତା,
ତୁମେ ଏକା ଜାଣ ସିନା ତୁମ ମନ କଥା ?
ତୁମର ଇଙ୍ଗିତେ ଘଟେ ଘଟଣା ସକଳ
ତୁମେ ଖେଳୁ ଆଉ, ମୁହିଁ କନ୍ଦୁକ କେବଳ
ଫିଙ୍ଗୁ ଅଛ ଯହିଁ, ମୁହିଁ ଯାଉଅଛି ତହିଁ,
କି ଉଦ୍ଦେଶେ କେଉଁ ଢରେ କେହ୍ନେ ଜାଣିବଇଁ ?
ତୁମର ଉଦ୍ଦେଶ୍ୟ ସିନା ତୁମକୁହିଁ ଜଣା,
ବୃଥା ଭାବ ତେବେ କପାଁ ହେବ ପଥ ବଣା ?

ଧୋବଡ଼ଆ ଡାକ ବଙ୍ଗଳା
ତା ୧୭ । ୩ । ୪୨



# ଅଣସ୍ତୁରୀ

ଅକସ୍ମାତେ ଦେଖିଲି ମୁଁ ଯୁଗଳ ବାଳିକା
ଲାବଣ୍ୟ-ଶିଶିର-ସ୍ନାତ କୁସୁମ କଳିକା—
ବଦନେ ଦେଖିଲି କାର ସାଦୃଶ୍ୟ ବିମ୍ବିତ
ସନ୍ଦେହ ଦୋଳାରେ ଚିତ୍ତ ହେଲା ଆନ୍ଦୋଳିତ ।
ବୟସ୍ୟେ ପୁଚ୍ଛିଲି "କହ କେଉଁ ଭାଗ୍ୟବତୀ—
ଗର୍ଭେ ଲଭିଛନ୍ତି ଜନ୍ମ ଏ ବେନି ସନ୍ତତି ?"
ଶୁଣିଲି ବୟସ୍ୟ ଠାରୁ ଯେଉଁ ନାମ ଗୋଟି
ସର୍ବାଙ୍ଗେ ବିଦ୍ୟୁତ ସ୍ରୋତ ଗଲା ମୋର ଛୁଟି;
ବିସ୍ମୃତ ପରଦା ତଳେ ଲାବଣ୍ୟ ପ୍ରତିମା
ଦେଖିଲି ମୋ ମାନସୀର ନବ ତରୁଣିମା ,

ଫୁଟନ୍ତା ଗୋଲାପ କଳ  ସମ ଯେ କିଶୋରୀ
ବସିଥିଲା ଧନେ ମୋର  ହୃଦୟ ଆବୋର;
ଯାର ଆଗମନ ପଥେ  ନୂପୁର କଙ୍କଣ
ଶୁଣିବାର ଲାଗି ପ୍ରାଣ  ହେଉଥିଲା ଛନ୍ନ
ଗୋଟିଏ ସଲଜ୍ଜ ହସ  ଝରେଖି ଯା ମୁଖେ
ଭାସୁଥିଲା ପ୍ରାଣ ମୋର  ଅଜାଚଳ ସୁଖେ,
ଦୂରରୁ ନରେଖି ଯାର  ପଣତ ଅଞ୍ଚଳ
ହେଉଥିଲା ଭାବାବେଶେ  ପ୍ରାଣ ମୋ ଚଞ୍ଚଳ,
ଶୁଣିବାର ଲାଗି ଯାର  ମୁଖୁଁ ପଦେ କଥା
ମନରେ ମୋ ଜାଗୁ ଥିଲା  କେତେ ବ୍ୟାକୁଳତ,
ଦେଖୁଥିଲି ବଦନେ ଯା  ସକଳ ସୁଷମା—
ଥିଲା ଠୁଳ ଏକାଧାରେ  ନାହିଁ ଯା ଉପମା ।
ନ ଥିଲି ସିନା ମୁଁ ଛୁଇଁ  ତା ଅଙ୍ଗ ଲତିକା
କିନ୍ତୁ ସେ ଜଳାଇ ଥିଲା  ଯେ ପ୍ରୀତି ବର୍ତ୍ତିକା—
ପ୍ରାଣେ ମୋର, ନଭି ନାହିଁ  ଜଳେ ଜୁଳୁ ଜୁଳୁ
ଏବେ ଶୁଦ୍ଧା ସ୍ମରିଲେ ତା  ଥରି ଉଠେ ବୁକୁ ।
ନ ବୁଝି ପାରେ ମୁଁ କାର  କି କୁହୁକ ବଳେ
ତରୁଣର ଉନ୍ମାଦନା  ଖେଳେ ବୁକୁ ତଳେ ।
ଦେଖେଁ ତା ମୂରତି ଯେବେ  ମାନସ ନୟନେ
ଏବେ ସୁଦ୍ଧା ପୁଲକର  ବନ୍ୟା ବହେ ମନେ ।

ପଥେ ଚାଲି ଯାଉଁ ଯାଉଁ । ଅବାଧ୍ୟ ନୟନ
ଦରଶନ ଲାଗି ତାରେ କରେ ଅନ୍ୱେଷଣ ।
ତା ସ୍ମୃତି କରଇ ମୋତେ ନିମିଷେ ପାଗଳ
ଲଭେ ପରାଭବ ଶିକ୍ଷା — ଦୀକ୍ଷା ମୋ ସକଳ ।
କୋଟି ଯତ୍ନେ ଆଉ କେବେ ଜୀବନରେ ଦେଖା
ମିଳିବାର ନୁହେଁ ତାର ପ୍ରୀତ ସ୍ମୃତି ରେଖା । *

ଜଗାରିଆ ଡାକବଙ୍ଗଳା
ପୁରୀ ଜିଲ୍ଲା
୨ । ୮ । ୩ । ୪୭



* ନିଜ ନିଭୃତ ପ୍ରେମାନୁଭୂତି ଗୀତ ଶେ—

# ଶଗୁରି

ମଙ୍ଗଳ ଆନନ୍ଦମୟ    ବିଧାତା ବିଧାନ
ନ ଜାଣି ମାନବ ହୁଏ    ଶୋକେ ମ୍ରିୟମାଣ ।
ଦୁଃଖ ବୋଲି ଯାହା ହୁଏ    ଆପାତ ପ୍ରତୀତ
ସୁଖର ବୀଜଟି ସେନା    ତା ଗର୍ଭେ ନିହିତ ।
ଏ ସାର ସତ୍ୟଟି କିନ୍ତୁ    ନ ବୁଝି ମାନବ
ଅକାରଣେ କରେ ଶୋକ    ତାପ ଅନୁଭବ ।
ସୃଜନର ମୂଳେ ଯେଣୁ    ଆନନ୍ଦ ନିହିତ
ଆନନ୍ଦର ବୀନା କିବା    ହୋଇବ କ୍ଷରିତ ?
ଅଜ୍ଞାନ ମାନବ ଶିଶୁ    ନ ବୁଝି ଏ ସତ୍ୟ
ବୃଥା ଶୋକେ ତାପେ କ୍ଳିଷ୍ଟ    ହୁଅଇ ସତତ ।
ସୃଷ୍ଟିର ଜନକ ଯେଣୁ    ସଦାନନ୍ଦମୟ
ସକଳ ସୃଷ୍ଟିର ମୂଳ    ଆନନ୍ଦ ଆଳୟ ।
ଆନନ୍ଦ ଆଗାରେ କାହିଁ    ନିରାନନ୍ଦ ସ୍ଥାନ
ତେବେ କିପାଁ ହୁଅ ବୃଥା    ଦୁଃଖେ ମ୍ରିୟମାଣ ।

ଦୁଃଖ ବୋଲି ଭଣେ ଯାହା ମାନବର ଜେବେ
ନୁହଇ କି ଅଭିହ୍ନତ ସୁଖ ଆନ କ୍ଷେତେ ?
ସୁଖ ଦୁଃଖ ସେନା ଏକ, ଭିନ୍ନ ପରିସ୍ଥିତି
ଜଗାଏ ମାନବ ମନେ ଝଭିନ୍ନ ପ୍ରତୀତି ।
ଆନନ୍ଦ ଦୃଷ୍ଟିରେ ଯଦ ଦେଖ ସୃଷ୍ଟି ସାରା
ଜୀବନେ ବହିବ ସଦା ପ୍ରେମାନନ୍ଦ ଧାରା ।
ସ୍ୱଭାବ ଦୁଃଖର ଗର୍ଭୁଁ ସୁଖର ନର୍ଝର
ପିଇଲେ ଲଭିବ ସିଧା ସ୍ୱାଦ ଅମୃତର ।

ଯୋଗିଢିଅ କାଳି ବଙ୍ଗଳା
୧୯ । ୭ । ୪୨



# ଏକସ୍ତରି

ତୁମର ମୁରଲି ତାନ,
ଶୁଣିବା ପାଇଁ ମୁଁ
ଦିବସ ରଜନୀ
ଡେରି ଥାଏଁ ସିନା କାନ !

ଝର୍ଣ୍ଣାର କଳରବ,
ଶୁଣେ ଯେବେ କାନେ
ତୁମର ମୁରଲୀ—
ସ୍ୱନ କରେ ଅନୁଭବ ।

ସାଗର ନିର୍ଘୋଷେ ପୁଣି,
ଚମକି ଉଠଇ
ପରାଣ ମୋହର
ତୁମରି ମୁରଲୀ ଶୁଣି ।

ମଳୟର ମରମରେ,
ଚାହିଁ ଉଠେ ସିନା
ତୁମରି ମୁରଲୀ
ଆତ୍ମା ର ମଧୁର ସ୍ୱରେ ।

ଘନ ଗୁରୁ ଗରଜନେ,
ତୁମର ମୁରଲି

ସ୍ୱନର ପ୍ରତୀତ
ଜାଗି ଉଠେ ମୋର ମନେ ।

ପ୍ରିୟା ଚୁପି ଚୁପି କଥା,
ଶୁଣେ ଯେବେ କାନେ

ତୁମ ବଂଶୀ ସ୍ୱନ
ପ୍ରାୟ ଲାଗେ ସରବଥା ।

ଶିଶୁ ପୁଅ କନ୍ୟା ମୋର
ଗୁଲୁ ଗୁଲୁ କଥା

କହନ୍ତି ଯେକାଳେ
ଶୁଣେ ତବ ବଂଶୀ ସ୍ୱର ।

ଏପରି ମୁଁ ଅନୁକ୍ଷଣ,
ମ'ନ୍ତ୍ର ମଧୁର

କୋମଳ କର୍କଶ
ଶୁଣେ ଯେତେ ଯେତେ ସ୍ୱନ

ସବୁର ଭିତରେ ପଶ,
ତୁମର ମୁରଲି

ଶୁଣି ମୋ ପରାଣ—
—ରାଧା ହୁଏ ଆତ୍ମହର! ।

ଅନ୍ତର ଭିତରେ ପୁଣି,
ଚମକି ଉଠଇ
ତୁମର ମୁରଲି
ମଧୁର ତାନଟି ଶୁଣି ।

ତୁମର ମୁରଲି ସ୍ୱନ,
ଭିତରେ ବାହାରେ
ଶୁଣି ମୋ ପରାଣ
ପୁଲକଇ ଅନୁକ୍ଷଣ ।

ମୋ ପ୍ରାଣ କିଶୋରୀ ରାଈ,
ଶୁଣି ସେ ମୁରଲି
ଅଭିସାରେ ତବ
ଯିବା ଲାଗି ହୁଏ ବାଈ,

କରେ ମନେ କେତେ ଆଶ,
ଦରଶନ ଲାଗି
ହୃଦ ବୃନ୍ଦାବନେ
ତୁମର ମିଳନ ରାସ ।

ଘୋରଡ଼ିଆ ଡାକବଙ୍ଗଳା
୨୦ । ୩ । ୪୨



## ବାଆସ୍ତରି

ଆଲୋକ ବର୍ତ୍ତିକା ଜାଳ  ମୋର ଗତ ପଥେ
ଚଳାଇ ନଅଛ ମୋତେ  ତୁମେ ଅବିରତେ ।
ଦେଖାଅ ସଂକେତ ଯେଉଁ  ପଥେ ସ୍ଥାତ ଠାର
ସେହି ପଥେ ଚାଲଇଁ ସେନା  ଆନ ନ ବିଚାର ।
ଦୁରୁଗମ ଗିରି ବର୍ତ୍ମ  ଅବା ରୁକ୍ଷ ପଥ
ଯେଣ ପଥ ଦେଖାଅ ତହିଁ  ଚାଲେଁ ଅବିରତ ।
ତୁମରି କରୁଣା ଜୋରେ  ହଏ ଯେବେ ଫାଶି
ସ୍ରୋତ ପ୍ରତିକୂଳେ ଉଠ  ମୋ ତରୀ ଉଜାଣି ।
କେବେ ପୁଣି କର୍ଣ୍ଣଧାର  ତୁମ ନିଦେଶରେ
ସ୍ରୋତ ଅନୁକୂଳେ ତରୀ  ଭାସି ଯାଏ ଖରେ ।
ଗତ ପଥ ଚିହ୍ନଉ ମୋର  ଋଜୁ ବା କୁଟିଳ
ଶୁଷ୍କ ଲୋକ ଦାଣ୍ଡ ଅବା  କର୍ଦ୍ଦମ ପିଚ୍ଛିଳ

ତାହିଁ ମୋ ଶୋଚନା ଅନ୍ତ,   ତୁମେ ଯେଣୁ ସାହା,
ଅନର୍ଜ୍ଞି ଦେଉଛନ୍ତୁ ପଶ   ତୁମେ ମୋର ସଖା ।
ଗତ ମୁକ୍ତି ଯେଣୁ ମୋର   ତବ ପଦେ ନ୍ୟସ୍ତ
ହେବ କିମ୍ପା ମୁହିଁ ବୃଥା   ଭବଦରେ ବ୍ୟସ୍ତ ?
ସମ୍ପଦେ କରିବ କିମ୍ପା   ବୃଥା ଆସ୍ଫାଳନ
ତୁମ କୃପା ବଳେ ଯେବେ   ମୁହିଁ ବଳୀୟାନ ?
ସର୍ବେ ଦଳି ପଦେ ତବ   ମୋହର ସକଳ
ପ୍ରତିଦାନେ ମାଗେଁ ଖାଲି   କରୁଣା କେବଳ ।

ପୁରୀ
ତା ୩୧ । ୩ । ୪୨



# ତେଏସ୍ତରି

ନ ପାରେଁ ବୁଝି ମୁଁ ତ କିଏ ସେ ଯାଦୁ କର
ଅନ୍ତର ପୁରେ ମୋର ଉଚ୍ଚାରେ କି ମନ୍ତ୍ର !
ମୋହିତ ହେଲା ଭଳି ମୋହିନୀ ମନ୍ତ୍ର ବଳେ
କାହାର ଇଙ୍ଗିତେ ମୁଁ ସତତ କାର୍ଯ୍ୟ କରେଁ ?
କାହାର ଇଚ୍ଛା ବଳେ ସଦା ମୁଁ ଧାଏଁ ଖାଲି
ଅକ୍ଳେଶେ ହୁଏଁ ପାର ଦୁସ୍ତର ମରୁ ବାଲି ?
ଦୁର୍ଗମ ଘୋର ପଥେ ଅଟକେ ନାହିଁ ପାଦ
ନ ଥାଏ ମନେ ଦନ୍ଦ ଅଙ୍ଗେ ବା ଅବସାଦ,
ସତତ ବୁଡେ ମୁହିଁ କରମ ସିନ୍ଧୁ ନୀରେ
ଆହର ଉହ ରାଶି ଉଠେ ମୁଁ ପୁଣି ତୀରେ ।
କାହାର ପ୍ରେରଣା ମୋ ହୃଦୟେ ସଦା ଜାଗେ !
ଆଶାର ଆଲୁଅ କେ ଦେଖାଏ ଆଖି ଆଗେ ?
ଧାଏଁ ମୁଁ ଖାଲି ତାର ଇଙ୍ଗିତ ଅନୁସର
ତାହାର ଇଚ୍ଛା ବଳେ ଯାଏଁ ମୁଁ କର୍ମ କରି ।
ତାହାର ବଳେ ସିନା ସଦା ମୁଁ ବଳୀୟାନ
ଅନ୍ତର ମନ୍ଦିରେ ମୋ ସେଇତ ଭଗବାନ ।

ବ୍ରହ୍ମଗର
୨୪ । ୦ । ୪୨



# ଚଉସ୍ତରି

ତୁମର ଇଚ୍ଛା ଶକ୍ତି
ପ୍ରେରଣା ଦିଏ ସଦା,
ସେ ଇଚ୍ଛା ଶକ୍ତି ବଳେ
କର୍ତ୍ତବ୍ୟ ପଥେ ସଦା
ଉଦ୍ଦେଶ୍ୟ କି ବା ତବ ?
ତୁମକୁ ଜଣା ଯିନା ?
ଭବିଷ୍ୟ ଦେଖିବାକୁ
କହବ କେହ୍ନେ କେଉଁ
ଅନ୍ଧାରେ ତେବେ କିମ୍ପା
ନ ପାରେ ବୁଝି ଯେଣୁ
ଚାଲିବା ପାଇଁ ପାଦେ
ଚାଲିବ ତେଣୁ ସଦା,
ଯେ ପଥ ଦେଖାଇବ
ହତାଶ ହେବ କିମ୍ପା
ଅନନ୍ତ ଆଶା ଧରି
ତୁମରି ନିର୍ଦ୍ଦେଶେ ମୁଁ

ଅନ୍ତର ପୁରେ ମମ
ନୁହେ କି ପ୍ରିୟତମ ?
ମୋହତ ହେଲାପର
ଯାଏ ମୁଁ କର୍ମ କରି ।
ଚଳାଇ କାହିଁ ନଅ ?
ବୁଝିବ କାହୁଁ ପ୍ରିୟ ?
ନାହିଁ ତ ମୋର ବଳ
କାର୍ଯ୍ୟେ ମୋ କେବା ଫଳ
ବୃଥା ମୁଁ ହେବ ଧନ୍ଦି
ତୁମଙ୍କ ଅଭିସନ୍ଧି ?
ଦେଇଛ ତୁମେ ବଳ
ନ ଲୋଡ଼ି ଫଳାଫଳ ।
ସେ ପଥେ ଯିବ ଚାଲି
ବୃଥା ମୁଁ ଭାବ ଖାଲି ?
ଅନ୍ତର ପୁରେ ମମ
ଚାଲିବ ପ୍ରିୟତମ !

ଢୋବାଣିଆ ଡାକବଙ୍ଗଳା
(ପୁରୀ)
ତା ୧୪ । ୫ । ୪୨



# ପଞ୍ଚସ୍ତରି

ଭାସିଥିଲି ଆଜ ମନେ ଶୂନ୍ୟ ପଥେ ଶୁଭ୍ରୁଁ
ଖଣ୍ଡ ଖଣ୍ଡ ଧଳା ମେଘ ଯାଉଥିଲା ଧାଇଁ
ଅନନ୍ତ ଆକାଶ ବକ୍ଷେ, ଶୁଭ୍ର ଫେନ ରାଶି
ସୁନୀଳ ସାଗର ସ୍ରୋତେ ଯାଏ କିବା ଭାସି ?
ମୃଦୁଳ ମଳୟାନିଳ ଆସୁଥିଲା ବହି
ଦୂରେ ତ କୁମ୍ଭାଟୁଆ ଡାକୁ— ଥିଲା ରହି ରହି ।
ମାଧବୀ ପଲ୍ଲବ କୁଞ୍ଜେ ବସି ପିକ ବଧୂ
'କୁହୁ' ରବେ ଢାଳୁ ଥିଲା କଣ୍ଠୁ ଅବା ମଧୁ ।
ନାନା ଜାତି ବିହଙ୍ଗର କାକଳି ନିସ୍ୱନ
ଜାଗାଉ ଥିଲା ମୋ ପ୍ରାଣେ ଗଭୀର ସ୍ପନ୍ଦନ ।
ସେ ମଧୁର ଐକ୍ୟ ତାନ ସଙ୍ଗେ ରଖି ତାଳ
ପ୍ରାଣ ବୀଣା ତାରେ ଉଠୁ ଥିଲା ମୋ ଝଙ୍କାର
ନ ପାରେ ମୁଁ ବୁଝି କିଏ ସେଇ ସୂତ୍ରଧର
ପ୍ରକୃତିର ରଙ୍ଗାଳୟ ସତତ ମୁଖର—
ସପ୍ତସ୍ୱର ସମନ୍ୱିତ ଅମୀୟ ସଂଗୀତେ
ଯବନିକା ଅନ୍ତରାଳେ ଯାହାର ଇଙ୍ଗିତେ ?

ବେତାରାଣିଆ ଡାକବଙ୍ଗଳା
(ପୁରୀ)
ତା ୧୨ । ୫ । ୪୨



# ସ୍ୱସ୍ତି

ନ ବାଜନ୍ତା ବୁକେ ଯେବେ ବିରହ ବେଦନା
ମିଳନେ ମିଳନ୍ତା କାହୁଁ ନବ ଉନ୍ମାଦନା ?
ନ ଥାନ୍ତା ପଶ୍ଚଣେ ଯଦି ଆଶା ଆକୁଳତା
ପ୍ରାପ୍ତିର ଆନନ୍ଦେ କାହିଁ ଥାନ୍ତା ସରସତା ?
ନିସ୍ତରଙ୍ଗ ଥାନ୍ତା ଯଦ କାଳ ପାରାବାର
ନ ଥାନ୍ତା ପଶ୍ଚଣେ ଯେବେ ଉଚ୍ଛା ବା ଜୁଆର,
ଜୀବନେ ନ ଥାନ୍ତା ଦୁଃଖ ସୁଖ ଅନୁଭୂତ
ଜୀବନ ହୁଅନ୍ତା ଖାଲି ଅଖଣ୍ଡ ସ୍ୱସ୍ତି;
ସେ ଜୀବନ ନୁହନ୍ତା କି ମୃତ୍ୟୁ ସଙ୍ଗେ ସମ
ଜୀବନରୁ ଅନୁଭୂତି ଯାନ୍ତା ଯେବେ ମର ?
ବର୍ଷାନ୍ଧ ବିରହ ବ୍ୟଥା ଲୋଡ଼ା ତେଣୁ ପ୍ରାଣେ
ବଞ୍ଚିବାର ଆନନ୍ଦଟି ସେହୁ ପିନା ଆଣେ ?
ଦୁଃଖ ଦୁର୍ବିପାକେ ତେଣୁ ନୋହୁ ମ୍ରିୟମାଣ
ଅନ୍ଧାର ମଧ୍ୟରେ କର ଆଲୋକ ସଂଧାନ ।

ନିମାପଡ଼ା ଯିବା ବାଟରେ ଶଗଡ଼ ଉପରେ
ତା ୨୭ । ୫ । ୪୨



# ଶତସ୍ତରି

ଆଶଙ୍କା ଶ୍ୱପଦ ବଂଶୀ
ଉଠିଲା ଗୋ ବାଜି
ନ ଜାଣେ କମ୍ପାଇ କାନେ ?
ଗଲା ସିନା ଭାଜି—
ସୁଖର ସପନ ମୋର
ହେଲା ଆନ୍ଦୋଳିତ
ସନ୍ଦେହ ଦୋଳାରେ ଅକ—
ସାତେ ମୋର ଚିତ୍ତ ।
ଧର୍ମ ତରୁ ମୂଳ ମୋର
କରି ଉତ୍ପାଟନ
ବହିଲା ଝଟିକା ବେଗେ
ଶଙ୍କା ପ୍ରଭଞ୍ଜନ ।
ହେଲା ପରାଭୂତ ମୋର
'ଦର୍ଶନ' ସକଳ
ଟୁଟିଗଲା ନିମିଷକେ
ମନୁଁ ସବୁ ବଳ
ଅସହାୟ ଶିଶୁ ପରି
ଅନ୍ତର ବାହାର
ଖୋଜିଲି ଲୋଡ଼ିଲି କାହିଁ
ଆଶ୍ରୟ କାହାର !
ପୌରୁଷର ଅହଙ୍କାର
ଗଲା ମୋର ଟୁଟି
ଦେଖିଲି ଚୌଦିଗୁ ଆସେ
ଘନ ତମଃ ଘୋଟି ।

ନ ପାଇଲି ଖୋଜି କାହିଁ    ଅନ୍ତ ମୋର ରାଧା
କହିଲି କାତରେ 'ପ୍ରଭୋ !    ହୁଅ ମୋରେ ସାହା ।
ସହସା ଦେଖିଲି ଝଡ    ଗଲା କାହିଁ ଲୁଚି
ଫୁଟିଲା ଆଲୋକ ରେଖା    ଗଲା ତମଃ ଘୁଞ୍ଚି
ସହସା ଦଶିଲା ଆଗେ    ପଥ ଜକ ଜକ
ତୁଟିଗଲା ମନୁଁ ମୋର    ଚିନ୍ତା ଭୀତି ତଙ୍କ;
ବୁଝିଲି ହେ ଭୂମା ! ତବ    ତୁଳେ କେତେ କ୍ଷୁଦ୍ର
ମୁହିଁ ଯେନା ବାରି ବିନ୍ଦୁ,    ତୁମେ ତ ସମୁଦ୍ର ।

ସୁସ୍ମ
ତା ୧ । ୬ । ୪୨



# ଅଠସ୍ତରି

କିଏ ସେ ଯାଦୁକର | କି କୁହୁକ ବଳେ
ଯୋଡ଼ି ଦେଲା ଅଜନ୍ତାରେ | ଖବା ଜଉଘରେ—
ଶତଚ୍ଛିନ୍ନ ବିକ୍ଷିପ୍ତ ମୋ | ସ୍ମୃତି ସ୍ତୂପ ଯୋଡ଼ି;
ସହସା ଉଠିଲା ମୋର | ଚେନାଏ ପଥେ ଫୁଟି—
ଅତୀତ ଅତଳ ତଳୁଁ | ସ୍ୱର୍ଣ୍ଣ ଶତଦଳ—
ଜନ୍ମ ପରାଭବ କାଳ | କୃଠେ କଉଶଳ ।
କେତେ ଶୀତ ଖରା ବର୍ଷା | ଗଲାଣି ତ ବିତ
ମୁହାଁଇଛି କେତେ କେତେ | ନୂଆ ପରିସ୍ଥିତି,
ସହୁଛି ଶରୀରେ ଶୀତ | କାଲୁଆ ପବନ
ବସନ୍ତେ ଲଭିଛି ପୁଣି | ପୁଲକ ସ୍ପନ୍ଦନ
କେତେ ମୁଣ୍ଡଫଟା ଖରା | ଯାଇଛି ତ ବଞ୍ଚି
ବାଦଲ ବଜରେ କେତେ | ଜାଗିଛି ତ ଭୀତି,
ବିମଳ ଆନନ୍ଦ ଘ୍ରାଣେ | ଦେଇଛି ଶରତ
ହେମ ଶସ୍ୟ ଧରାଅଙ୍ଗ | ମଣ୍ଡିଛି ହେମନ୍ତ,

ପ୍ରେତ ହୁଏ ପରା କାଳ, କୁମ୍ଭକର ତଳେ
ବିସ୍ତାରନ୍ତି ଇନ୍ଦ୍ର ଜାଲ ଖେଳ ଲୁଚୁହେଲେ,
ମୂଢ଼ ମାନବର ନେତ୍ରେ ଚୋଖ. ମୋହାସ୍ତ୍ରନ
ଦେଖାଉଛନ୍ତି କେତେ ଖେଳ ଅଘଟ ଘଟନ;
ଜ ନୁହେଁ ତା କୂଟ କ୍ରୀଡ଼ା ମୋହାନ୍ଧ ମାନବ
ବୃଥା ଅହଙ୍କାରେ କରେ ଭୀଷଣ ଆହବ ।
କାଳର ଇଙ୍ଗିତେ ଘଟେ ଘଟଣା ସକଳ
କାଳ ହସ୍ତେ ଜୀବ ସଜା 'ନ୍ୟାୟବଳ' ବଳ

ପୁରୀ
୨୯ । ୬ । ୪୬



# ଅଣାଅଶି

ବୁଝି ମୁଁ ପାରଇ ନାହିଁ,
ଅଜସ୍ରାତେ କମ୍ପା ଆକୁଳେ କାନ୍ଦଇ
ପରାଣ ମୋ କାହା ପାଇଁ ?
କାହାର ପରଶ ଲାଗି,
ଅପରନ୍ତ ମୋର କାମନା ବାସନା
ଉଠଇ ପରାଣେ ଜାଗି ?
କାହାର ବିରହ ଆଜି,
କରଇ ଆଘାତ ଅନ୍ତରେ ମୋହର
ଶକ୍ତି-ଶେଲ ସମ ବାଜି ?
ଆଷାଢ଼ ଆସାର ପରି,
କାହା ଲାଗି ଆଜି ନୟନରୁ ମୋର
ବାରି ଧାରା ପଡ଼େ ଝରି ?

ପରାଣ ମୋ ହୁଏ ବାଇ,
କାହା ପାଶେ ଆଜ　　　ଲାଜ ଭୟ ତେଜି
ଅଭିସାରେ ଯିବା ପାଇଁ ?
କାହିଁ ଅଛ ପ୍ରିୟ ମୋର ?
ଅଲକ୍ଷେ ଟାଣୁଛ　　　ମୋ ପରାଣ ମନ
ଲଗାଇ ପୀରତି ଡୋର ?

ଘୋରଡିଆ ଡାକ ବଙ୍ଗଳା
ତା ୧୭।୭।୪୨



# ଅଶି

ଉଷାର ଅରୁଣ ରାଗେ  ଯେ ବର୍ଣ୍ଣ ବଇଭବ
ପୁତ ଫଳେ ପ୍ରାଚୀ ପଟେ  ଶୋଭା ଅଭିନବ—
ଯରକାଣି ଜଳେ ସ୍ଥଳେ,  ଗଗନେ ଭୁବନେ—
ଲୁହାଏ ପୁଲକ ବନ୍ୟା,  ବିଶ୍ୱବାସୀ ମନେ !
ମୃତ୍ୟୁ କଳ୍ପ ସୁସୁପ୍ତିର  କବଳୁଁ ମାନବ
ଲଭି ପରିତ୍ରାଣ କରେ  ଜୀବନ ଉତ୍ସବ,
ପ୍ରାଣେ ଭରି ଅପରନ୍ତ  ନବ ଉନ୍ମାଦନା
ଭଙ୍ଗ ମଞ୍ଚେ କରେ ନୂଆ  ନାଟ୍ୟର ରଚନା !
ଆପଣା ସ୍ୱରୂପ ଭୁଲି  କରେ ଅଭିନୟ
ଚେତନ ମନୁଁ ରାଗ ଶୋକ  ଜରା ମୃତ୍ୟୁ ଭୟ
ବାଜଇ ନେପଥ୍ୟ ଯେବେ,  ମଧୁ ଐକ୍ୟତାନ—
ସମନ୍ୱିତ ଆଶା ବୀଣା  ପୁଲକାଇ ପ୍ରାଣ !
କିଏ ସେହି ସୂତ୍ରଧର  ପଛେ ଅନ୍ତରାଳେ ?
କମ୍ପାଏ ଯେ ବିଶ୍ୱ ପ୍ରାଣ  ତାଳେ ତାଳେ ତାଳେ—
ବଜାଇ ମୋହନ ବଂଶୀ  ଯାଦୁକର ପରି
ଲୁହକ ମନ୍ତ୍ରରେ ସବେ  ସମ୍ମୋହିତ କରି ?

ଯବଧୋଇପୁର ବଙ୍ଗଳା
ତା ୨୨।୬।୪୨



ଆକୁଳେ ପୁଚ୍ଛିଲି ପୁଣି — 'କାହିଁ ମୋର ମୁକ୍ତି ?'
ଦେଖିଲି ଶ୍ରୀ ଅଙ୍ଗୁ ଖସି — ଏକ ଦିବ୍ୟ ଜ୍ୟୋତିଃ ।
ଉଭା ହୋଇ ଆଗେ ମୋର — କହିଲା ଏ କଥା
'ନୟନ ଉନ୍ମିଳ ଆଗେ — ଦେଖ ମୁକ୍ତି ପନ୍ଥା ।'
ଦେଖିଲି ମୁଁ କୋଟି କୋଟି — ନରଙ୍କ କଙ୍କାଳ
ମାତ୍ର କେତେ ମୁହଁ ଉର୍ଦ୍ଧ୍ୱ— ଛନ୍ତି ବେଢେ ଜାଳ ।
ଅଙ୍ଗୁଳି ସଙ୍କେତେ କହି — ଦେଲା ସେଇ ଜ୍ୟୋତିଃ
'ସେଇରେ ଦେବତା ତବ — ସେଇ ତବ ମୁକ୍ତି ।'
ଟୁଟିଗଲା ମୋହ ମୋର — ଭାଙ୍ଗିଲା ସ୍ୱପନ
ମନ୍ଦିର ବରଜି ତହୁଁ — କଲି ମୁଁ ଗମନ ।
ରୋଗ ଶୋକ ଜର୍ଜରିତ — ଅଭାବ ପୀଡ଼ିତ
ସନ୍ତୁଳନ୍ତି ଯହିଁ କୋଟି — ନଗ୍ନ ବୁଭୁକ୍ଷିତ ।
ଦଣ୍ଡ ହେତେ ଆପଣାରେ — କଲି ମୁଁ ଉତ୍ସର୍ଗ
ଦେଖିଲି ସମ୍ମୁଖେ ତହୁଁ — ମୋର ମୁକ୍ତି ସ୍ୱର୍ଗ ,
କୋଟି ପ୍ରାଣ ମଧ୍ୟେ ଥାପି — ଆପଣା ଆସ୍ଥାନ
ବରଜନ୍ତି ବିଶ୍ୱବ୍ୟାପି — ଆପେ ଭଗବାନ ।

ଚାନ୍ଦିଖାଇ ଯିବା ବାଟରେ
ଶଗଡ଼ ଉପରେ
୨୬ । ୪ । ୪୨



# ବନ୍ୟାଅଣି

ଗଗନେ ଧୂସର ମେଘ ପଡ଼ିଥିଲା ନଇଁ,
ଆଷାଢ଼ର ବାରି ଧାର ପଡୁଥିଲା ବହି—
ନିଦାଘର ତାପ ତପ୍ତ ଧ୍ୱସ୍ତ ବକ୍ଷ ପରେ,
ବୁହାଇ ପୁଲକ ବନ୍ୟା ଧରା କଳେବରେ ।
ନବଜାତ ତୃଣାଙ୍କୁର ଛନ୍ନେ ଧରା ଅଙ୍ଗ
ରୋମାଞ୍ଚିତ ହେଉଥିଲା ଲଭି ତାର ସଙ୍ଗ;
ରୋମାଞ୍ଚିତ ହୁଏ ଯଥା ଦୀର୍ଘ ବିରହିଣୀ
ପ୍ରିୟ ସଙ୍ଗ ଲଭି ଯେବେ ପୁହାଏ ଯାମିନୀ;
ନିରନ୍ତର ଅବସାଦେ ଆସେ ଯେ ମିଳନ
ଜନ୍ମାଏ ସେହିଟି ସିନା ପୁଲକ ସ୍ପନ୍ଦନ !
ବୈଶାଖର ରୌଦ୍ରତାପ ନ ଥିଲେଟି ସହି
ବର୍ଷାର ପୁଲକ ସ୍ପର୍ଶ ଲଭନ୍ତା କି ମହୀ ?
ଦୁଖ ସୁଖ ବେନି ତେଣୁ ଲୋଡା ଏ ଜୀବନେ
ଏକ ବିନା ଆନ ଭାବ ନ ଜାଗଇ ମନେ ।
ସତ୍ୟ ଶିବ ସୁନ୍ଦର ହିଁ ବିଧିର ବିଧାନ
ଦୁଃଖେ ଶୋକେ ହୁଅ ତେବେ କିପାଁ ମ୍ରିୟମାଣ ?

ପୁରୀ
୧୮ । ୬ । ୫୭



# ଟେୟାଅଣି

ଆସ ପ୍ରିୟ ସଖା ମୋର, ହେ 'ମଣିବର୍ଦ୍ଧନ'
ପ୍ରଥମ ଆଲିଙ୍ଗନ ମୋରେ ଦିଅ ଦାନ ଧନ ।
ତୁମ ଲାଗି ପ୍ରାଣ ମମ ସତତ ଆକୁଳ
ତୁମର ପରଶେ ଲଭେଁ ଆନନ୍ଦ ଅତୁଳ ।
ତୁମ ବିନା ପ୍ରାଣ ଲାଗେ ମରୁଭୂମି ପରି
ଅକାଳରେ ଆସେ ଘୋଟି ଅବସାଦ ଭରି ।
ଓଷ୍ଠାଧରେ ବହ୍ନୀର ଦଂଶେ ରତନ ସଂଘାତ
ତୁମର ପରଶ ବିନା ଜୀବନ ଅସାର ।
ତୁମ ଯୋଗୁଁ ଲଭେଁ କେତେ ନୂଆ ଅନୁଭୂତ
ନବୀନତା ଆସ୍ୱାଦନେ ଲଭେଁ କେତେ ସୁଖ ।
ତୁମେ ସଦା ଯାଦୁକର କୁହୁକ ଲଗାଇ
ଧରି ସୃଷ୍ଟି ଇନ୍ଦ୍ରଜାଲ କାହିଁର ଛୁଆଇ ।

ତୁମ ଯୋଗୁଁ ଯାଏ ବଢ଼ି     ମୋ ସାହସ ବଳ
ଯୁଝେଁ ମୁଁ ବିପଦ ସଙ୍ଗେ     ଭରି କଉଶଳ ।
ମୁହାଁଏ ମୁଁ କେତେ କେତେ     ନୂଆ ପରିସ୍ଥିତି
ତୁମରି ପ୍ରସାଦେ ଦେଖେଁ     ନୂଆ ଦୃଶ୍ୟ ନିତି ।
ତୁମ ଯୋଗୁଁ ଲଭେଁ କେତେ     ନୂଆ ଅଭିଜ୍ଞତା
ଝରି ଉଠେ ଶତ ଲାଗେ     ପ୍ରାଣେ କୃତଜ୍ଞତା ।
ତୁମ ହେତୁଁ ଲଭେଁ ଯେଣୁ     ପୁଲକ ପରଶ
ତୁମ ସଙ୍ଗ ଲୋଡେ ମୁହିଁ     ରଜନୀ ଦିବସ ।

[illegible]
୨୧ । ୭ । ୨



# ଚୌରାଅଶିଁ

ସ୍ୱପନ ଦେବତା ମୋର
ଅବତରି ଆସ କ୍ଲାନ୍ତ ନୟନେ
ଭରି ଦଅ ମଦ ଘୋର ।
ତୁମରି ପରଶ ଲାଗି
ଅମରାବତୀର ଅପରୂପ ଶୋଭା
ଉଠୁ ମୋ ପରାଣେ ଜାଗି ।
ଭୁଲାଇ ଦଅ ଗୋ ମୋରେ
ବା'ନ୍ଧି ଦଅ ମୋ ପରାଣ ମନ ଗୋ
ଅତୁଟ ପୀରତି ଡୋରେ ।
ତୁମରି ଆସିବା ପାଇଁ
ନୀରବ ନଶିଥେ ଜାଳ ମୁଁ ଜାଗର
ବସି ଅଛି ପଥ ଚାହିଁ ।

ଲୋଡ଼େ ନାହିଁ ଜାଗରଣ
ଲାଗି ଥାଏ ଯହିଁ ତନ୍ଦ୍ରା ପାଇଁ
ଅନ୍ତରଦ୍ୱନ୍ଦ୍ୱ ଘୋର ରଣ ।
ଅଥବା ସୁଷୁପ୍ତି ଘୋର
ଢଳିଯାଏ ଯହିଁ ଚେତନା ସକଳ
ସବୁ ଅନୁଭୂତି ମୋର ।
ତେଣୁ ଲୋଡ଼େ ତବ ସାଥି
ଅଧା ଜାଗରଣେ ଅଧା ନିଦ ଘୋରେ
ପୋହାଇବ ସୁଖ ରାତି ।

[illegible]
[illegible]



# ପଞ୍ଚାଅଶି

ଆସ ଗୋ ଅପତରି ଏ ଭବ ଦାଳା ତୁମେ
ବରଷ ବାରିଧାରା ମୋ ହୃଦ ମରୁଭୂମେ ।
ଜୀବନ ରଣାଙ୍ଗନେ ଚଳାଇ ଅଭିଯାନ
ଅବଶ ଅଙ୍ଗ ମୋର ପରାଣ ମ୍ରିୟମାଣ ।
ବାସ୍ତବ ସଙ୍ଗେ ଯୁଝି ଜୀବନେ ଅବିରତ
ଲଭିଛି ଅଙ୍ଗେ କ୍ଷତ ଦେଖ ଗୋ ଶତ ଶତ ।
ଭୁଲାଇ ଆଜ ତେଣୁ କ୍ଷଣିକ ଅବସର
ତୁମରି ସାଥେ ପ୍ରିୟେ; ରଚିବ ଖେଳ ଘର ।
ଯେବେ ମୁଁ ଯିବି ଭୁଲି ନିଷ୍ଠୁର ବାସ୍ତବତା
ଘୁମାଇବି କୋଳେ ତବ ନିଶ୍ଚିନ୍ତେ ରଖି ମଥା ।
ତୁମରି ସ୍ନିଗ୍ଧ ସ୍ପର୍ଶ ହେଉ ଗୋ ହେଉ ଦୂର
ସକଳ ଅବସାଦ ଯାତନା ଯାକ ମୋର ।
ଅଧରେ ଧର ମୋର ମଦିରା ପାତ୍ର ଭରି
ଗଭୀର ସୁସୁପ୍ତିରେ ଚେତନା ଯାଉ ମରି ।
ବାସ୍ତବେ ଦିଅ ଆଣି ନିଗମ ନିଦ ଘୋର
ଜୀବନୁଁ ଅବସାଦ ହେଉ ଗୋ ସବୁ ଦୂର ।

[illegible]
[illegible]



# ଛୟାଅଣି

ସବୁ ଆଶା ପଛେ ନ ହେଉ ପୂରଣ
ଆଶା ମାତ୍ର ଥାଉ ଜାଗି
ଜୀବନ ସାରା ମୁଁ ରହିଥିବ ଚାହିଁ
ତାର ଆଗମନ ଲାଗି ।
ଶୁଖି ଯାଉ ପଛେ ନୟନର ନୀର
ଥକି ପଡୁ ଆଖି ପତା
ତାର ଆଗମନ ପଥେ ଚାହିଁ ବସି
ଭୁଲିଯିବ ଆନ କଥା ।
ଜୀବନେ ପଲକେ ନ ଦେଉ ଧରା ସେ
ସ୍ୱର୍ଣ୍ଣ ମାୟା ମୃଗ ପରି
ତଥାପି ଧାଇଁବ ଆଶାୟି ପରାଣେ
ତାର ପଥ ଅନୁସରି ।
ଧାଇଁ ଧାଇଁ ପଛେ ଥକି ଯାଉ ପାଦ
ତଥାପି ଥିବ ମୁଁ ଧାଇଁ ।
ଧାଇଁ ବାରେ ଯିବା ସବୁ ସୁଖ ମୋର
ବିଶ୍ରାମ ଲୋଡିବି ନାହିଁ ।

ଗାଲେଲାଗୋମୁଣ୍ଡି ଡାକ ବଂଗଳା
ତା ୧୦ । ୯ । ୮୨



# ଅଠାଅଶି

ନଶ୍ୱର ଜୀବନ ସ୍ରୋତେ ତରୀ ଅଗଣିତ
ଆସେ, ଭାସି ଯାଏ ଦୂର; କାହାର ଇଙ୍ଗିତ-
ଚଳାଏ କେଉଁଠି ବସି କିବା କଉଶଳେ
ଆପଣାର ପଥ ଧରୁ କି ଚୁମ୍ବକ ବଳେ ।
ଯାଏ ଭାସି ଭାସି ତରୀ କେଉଁ ଦେଶେ ଦୂର
ଅଥବା ଆସଇଁ କାହୁଁ, ମୂକ ଜଡ଼ ଖାଲି—
ଦେଖଇ ସିନା ମୁଁ ବସି ବେଳା ସିକତାରେ
ନ ପାରଇଁ ଦେଖି କିନ୍ତୁ ପାଲ ଅନ୍ତରାଳେ—
କିଏ ସେହୁ କର୍ଣ୍ଣଧାର, ଯିଏ ମଙ୍ଗ ଧରି
କାଳ ସ୍ରୋତ ବକ୍ଷେ ବାହେ ଲକ୍ଷ ଲକ୍ଷ ତରୀ ।
ସ୍ରୋତ ଅନୁକୂଳେ ଯେବେ ଭାସିଯାଏ ନାହା
ଅତା ଶୁଭ୍ର ପାଲେ ଲାଗେ ଅନୁକୂଳ ବାଆ
ନାବିକର କଣ୍ଠୁ ସ୍ଫୁରେ ପୁଲକ ସଙ୍ଗୀତ
କ୍ଷଣେ ଯାଏ ଭୁଲି, କର୍ଣ୍ଣ-ଧାରର ଅସ୍ତିତ୍ୱ ।

ଶାଖ ଯେବେ ପ୍ରତିକୂଳେ ଉଠଇ ଉଜାଣି
[illegible] ଯବେ ଫୁଟି ଫୁଟି ରକ୍ତ ହୁଏ ପାଣି
[illegible] ବେଗରେ ବହେ ପ୍ରତିକୂଳ ବାୟୁ
[illegible]ତର ସମ୍ମୁଖ ପାରେ ନାହିଁ ଯୋଦ ଆଉ
[illegible]ବେଳେ ଡାକେ 'କର୍ଣ୍ଣଧାର ବୃଦ୍ଧ ସାହା
[illegible]ଦ୍ଧ ଜଡା କେସନେ ମୁଁ ଚଳାଇବ ନାହା ?
ମୁଁ ଯେ ନା ବାଳକ ମାତ୍ର ବୃଦ୍ଧ କର୍ଣ୍ଣଧାର
[illegible] ଜଡା ମୋ ତରୀ କେମନ୍ତେ ଯିବ ସିନ୍ଧୁ ତୀର ?'

ରମ୍ଭା [illegible]ଲା
ତା ୨୦ । ୯ । ୬୭

[illegible]

[illegible] ୬୭

[illegible]

# ଅଣାନବେ

ନ ପାରଇଁ ବୁଝି ମୁଁ ତ କାହାର ଇଙ୍ଗିତ
କରଇ ନିଖିଳ ପ୍ରାଣ ସଦା ନିୟନ୍ତ୍ରିତ ?
ମାନବର ଭାଗ୍ୟ ଡୋରି ଧରି ଦୃଢ ହସ୍ତେ
ଚଳାଏ କେ ମହାଶକ୍ତି ରହି ଅଲକ୍ଷ୍ୟରେ ?
ମୁହୂର୍ତ୍ତେ ମୁହୂର୍ତ୍ତେ ଘଟେ ଯେଉଁ ଅସଂଖ୍ୟ ଘଟଣା
ଅନ୍ତରାଳେ ଦିଏ କିଏ ସକଳ ପ୍ରେରଣା ?
କିଏ ସେ ଅଦୃଷ୍ଟ ଶକ୍ତି, ଯବନିକା ପାଛେ
କରେ ନିୟନ୍ତ୍ରିତ ଯେହ୍ନୁ ଏ ବିଶ୍ୱ ସଂସାରେ ?
ଈଶ୍ୱର ବିଶ୍ୱାସୀ ଭକ୍ତ ବୋଲେ ଭଗବାନ
ନାସ୍ତିକ ବୋଲଇ ଅବା ପ୍ରକୃତ ବିଧାନ ;
ଯାହା ଇଚ୍ଛା ତାହା ବୋଲ ନାହିଁ କିଛି ଦୋଷ
ପାରିବ କି ଅସ୍ୱୀକାର କରି ସେ ଶକତି ?
'ଦର୍ଶନ'ର ଯୁକ୍ତି ତର୍କ ପରାଭୂତ ହୁଏ
'ବିଜ୍ଞାନ'ର ଗବେଷଣା ନ ପାରଇ କିଛି

କାହିଁରୁ ସେ ମହାଶକ୍ତି ଜିବା ତା ଆକୃତ
ଅନନ୍ତା ଅଟେ ଯାର ଅସୀମ ବସ୍ତୁତ ।
ଧଣ୍ଟ ରନ୍ଧ୍ରେ ରଙ୍ଗେ ଯାର ଅମର ରାଗିଣୀ
ଜାଗେ ସଦା ପୁତ ପ୍ରାଣେ, ଦିବସ ଯାମିନୀ ।
ମା ଅସ୍ତ୍ରୁ ଛଡା ଛଣୁ ଜୀବହୀନ ଜନ
ତାହା ପାରୁ ଅବା ତପ କହ୍ନ ଅଛୁ ବଳ ?
ଯାହାରୁ ପୁଲକେ ଜନମ ଦେଇ ମହା ଶକତ
ପ୍ରକୃତି ରୂପିଣୀ ଆଦ୍ୟା, ଘେନ ମୋ ପ୍ରଣତ ।

[illegible]

[illegible]



# ନଚେତ

ଅବାଉ ହୁଏ ମୁହିଁ
ଚଳାଇ ନଅ ମୋରେ
ନ ଦେଖି ଆଗ ପଛ
ତୁମରି ନିର୍ଦ୍ଦେଶରେ
ଉଦ୍ଦେଶ୍ୟ ଦେଖିବାକୁ
ବୁଝିବ କେବେହେଁ କହ
ଜାଣିବ କେବେହେଁ କିସ
ସେପାଇଁ ତେବେ ବୃଥା
ତେଣୁ ହେ ପଦେ ତବ
ସକଳ ଅଭିମାନ
ରହିବ ସଦା ତବ
ନିର୍ଭୟେ କର୍ମ ପଥେ
ଲଙ୍ଘିବ ଆଗେ ପଛେ
ଚଳାଇ ନେବା ଲାଗି

କାନ୍ଦିବା କେଉଁ ପଣ
ଅଦୃଶ୍ୟେ ହାତ ଧରି
ଚଳିଲେ ମୁଁ ଅବିରତ
ଯେସନ ଭୂତ ଗ୍ରସ୍ତ;
ଦେଇ ତ ନାହୁଁ ବଳ
କି କାର୍ଯ୍ୟ ହେବା ଫଳ !
ଅଛି ମୋ ଭାଗ୍ୟ ଜାଣି
ଭାବିବ ବସି ଖାଲି ?
ସମର୍ପି ଦେଇ ମୋର
ଭାବନା କରି ଦୂର
ଇଙ୍ଗିତ ଅନୁସରି
ଯିବଇଁ ଅବିରତ ।
ସେପାଇଁ ଦେଖାଇ ରାହା
ତୁମେ ତ ଅଛ ସାହା ।

ଜମ୍ମୁରୁ ବ୍ରହ୍ମପୁରକୁ
ଆସିବା ବାଷ୍ପଟର ରେଳ ଉପରେ
୨୧ । ୯ । ୮୨



# ଏକାନ୍ତରେ

ସମର୍ପି ଦେଲି ଯେବେ ଯା ଥିଲା ସବୁ ମୋର,
ଚରଣେ ତବ ନାଥ, ଛିଣ୍ଡାଇ ମାୟା ଡୋର,
କର୍ତ୍ତୃତ୍ୱ ସବୁ ମୋର ଦେଲି ଗୋ ପାଦେ ଦାନ
ରଖିଲି ଭକ୍ତି ପ୍ରାଣେ ହେଲି ମୁଁ ମହାଧନୀ,
ଥିଲାନି ବୋଲି ସିନା କଳ୍ପିତ ସୁଖ ମାନ
ହୃଦୟ ଦୋଳି ଉପରେ ଥରୁ ମୋ ଥିଲା ଗାନ
ଦେଖିଲି ମୁଁ ଯେବେ ତବ ଚରଣେ ସନ୍ଧ୍ୟା ଦୀପେ
ସାଗରର କହିଁ ତଳୁ ଉଠିବ ଆଉ କିପାଁ ?
କଠିନ ପଥେ ଏବେ ସ୍ଖଳିବ, ନାହିଁ ଭୟ
ଭକ୍ତି ପ୍ରାଣେ ମୁଁ ସିନା କରିବି ବିଶ୍ୱ ଜୟ ।
ନାହିଁ ତ କିଛି ମାନ ଭାବିବା ପାଇଁ ଆଶ
ଜୀବନ ପଥେ କିଛି ଯାଉ ମୋ ଶେଷ ଆଶ ।

[illegible] ଅର୍ପିତା ରାମାର
[illegible]
[illegible]



# ବର୍ଷାନ୍ତେ

ବାରୁଣୀ ବଧୂର    ଅମଳ କପୋଳେ
ଅନୁରାଗ ରାଗ ବୋଳ
ପ୍ରେମ ପରାଗେ କି    ଦେବ ଅଂଶୁମାଳୀ
କରୁଥିଲେ କୋଳାକୋଳ
ନୀଳଗିରି ତଳେ    ଘନ ଅନ୍ତରାଳେ
ରଚୁଥିଲେ ଅଭିସାର
ଫିଟି ପଡ଼ୁଥିଲା    ଅଳସେ କବରୀ
ଛିଣ୍ଡି ଲୋଟୁଥିଲା ହାର ।
ସବୁଜ କେଦାରେ    ଶୋଭାର ଲହରୀ
ଖେଳୁଥିଲା ବାୟୁ ଭରେ,
ତରଳିତ ସ୍ୱର୍ଣ୍ଣ    ସ୍ରୋତ ବହୁଥିଲା
କ୍ଷୁଦ୍ର ସ୍ରୋତସ୍ୱତୀ ଜଳେ ।
ଝରି ପଡୁଥିଲା    ଶାରଦ ଗଗନୁଁ
ସୁଧା ଧାରା ସମ ବୃଷ୍ଟି
ଉଦ୍ୟ ପୁଲକେ    ଭାବୁଥିଲି ବସି
କାହାର ଏ ମଧୁ ସୃଷ୍ଟି ?

ସଜାଇ ରଖିଛି          ଶୋଭାର ପସରା
ଛଏ ସେ ଧରଣୀ ଅଙ୍ଗେ
ଉଷା ପ୍ରଦୋଷରେ          ଆଲୋକର କ୍ରୀଡ଼ା
ରଚେ ଛଏ ନାନା ରଙ୍ଗେ ?
ଦିବା ରଜନୀର          ଆଲୋକ ଅନ୍ଧାରେ
ପ୍ରତିଫଳେ କାର ଛାୟା
କାହିଁ ରହନ୍ତି ସେ          ସୃଷ୍ଟିର ଜନକ
ଲୁଚାଇ ଆପଣା କାୟା ।
ଅନ୍ତର ଦେବତା          କହୁଲାଛ ଡାକି
ଦେଖରେ ମେଲାଇ ନେତ୍ର
ତାହାର ମୂରତି          ଧରିଛି ପରା ସେ
ଶ୍ୟାମ ଶସ୍ୟ ଭରା କ୍ଷେତ୍ର ।
ତାହାର ମଧୁର          କମନୀୟ କାନ୍ତି
ଧରେ ପରା ବନ ଗିରି,
ଜଳେ ସ୍ଥଳେ ଅବା          ଅନ୍ତରୀକ୍ଷେ ପରା
ପ୍ରକଟିତ ତାର ଶିରି ।
ସେହି ପରା ଆଦ୍ୟା          ସୃଷ୍ଟିର ଜନନୀ
ପ୍ରକୃତ ତାହାର ନାମ
ଭକତ ନୟନେ          ସେଇ ଭଗବାନ
ସର୍ବ ବ୍ୟାପି ଆତ୍ମା ରାମ ।

ଦେହ୍ଲି ଯିବା ରାସ୍ତାରେ ଟ୍ରେନ୍ ଉପରେ
୨୨ । ୯ । ୪୨



# ତେସ୍ମାନବେ

ଧୂଳାର କରଣ          ଲୁଣି ପାଉଥିଲା
ଗହଳ ସବୁଜ କ୍ଷେତେ
ଶୁଭ୍ର ପକ୍ଷ ମେଲି          ଯାଉଥିଲେ ଉଡ଼ି
ସ୍ନିଗ୍ଧ ବିହଙ୍ଗମ କେତେ ।
ସ୍ରୋତେ ହେଉଥିଲା          ଶୁଭ୍ର ପାଲ ଟେକି
ଭାସେ ଅଗଣିତ ନାଆ
ଶ୍ୟାମଳ କେଦାରେ          ଶୁଭ୍ର ଫେନ ଶିରେ
ଢେଉ ଖେଳାଉଛି ବାଆ;
ଚିକ୍କଣ ପକ୍ଷ ମେଲି          ଉଡ଼ ଉଡ଼ଙ୍କିଆ
ଉଠେ ପଡ଼େ କେତେ ରଙ୍ଗେ
ଚାଳ ଇନ୍ଦ୍ରଧନୁ          ଚପଳ ଭଙ୍ଗିରେ
ଖେଳେ କି ବାରିଧି ଅଙ୍ଗେ ?

ଶାରଦ ସୁନୀଳ ଅମ୍ବରେ ବହନ୍ତି
ଉଡ଼ି ବୁଲେ ଖଣ୍ଡ ଚଲ
କଜ୍ଜଳ ପଟିଟି ପଡ଼ି ଉଠି ମୋଡେ
ପରଶେ ସବୁଜ ଦଳ ,

ଗଗନର ଶୁଭ୍ର ଶାରଦ ନୀରଦ
ପ୍ରତଫଳେ ନୀଳ ଜଳେ;
ଶୋଭାର ଲହରି ଉଚ୍ଛୁଳ ପଡେ କି
ଅନ୍ତରୀକ୍ଷେ ଜଳେ ସ୍ଥଳେ ?

ଦୂର ବନଗିରି ସୁନାର କିରଣେ
ଝଲସି ଉଠଇ ପଶ
ସୁନୀଳ ମସ୍ତକେ ସୁନାର ମୁକୁଟ
ପିନ୍ଧିଛନ୍ତି ବସୁନ୍ଧରା ?

ଶ୍ୟାମଳ କେଦାରେ ଧବଳ ଚାମର
ଢୋଳନ୍ତି କାଶ ସୁମନ
ବାତେ ଦୋହଲାଇ ପ୍ରକୃତ ରାଣୀରେ
କରଇ ଅବା ବ୍ୟଜନ ।

ଅଦୂରେ ଶୋଭଇ ଶୋଭା ଗନ୍ଧାଧର
ଝଲକା ନୀଳାମ୍ବୁ ରାଶି
ସ୍ୱର୍ଣ୍ଣ ପାଲ ଟେକି ଯା ବିଶାଳ ବକ୍ଷେ
କେତେ ତରୀ ଯାଏ ଭାସି;

ଏସନ ଷଟଙ୍ଗ ଜନପଦ ଭର୍ଗ
ପ୍ରକୃତର ରଙ୍ଗାଳୟ
ସଜାଇ ରଖିଛି କିଏ ସୂତ୍ରଧର,
ରଚେ ଯନ୍ତ୍ର ଅଭିନୟ ।
କୋଟି କୋଟି ପ୍ରାଣେ ଜିଏ କେଉଁ ମତେ
ଦରା ନଣି ଅବିରତ
ଏ ରହସ୍ୟ ଜାଲ କେ ପାରେଁ ମୁଁ ଭେଦ
ଭାବି ହୁଏ ଜଡ଼ବତ ।

ଭୁବନେଶ୍ୱରରୁ ବ୍ରହ୍ମପୁରକୁ
ଆସିବା ଟ୍ରେନ ଉପରେ
୨୪ । ୯ । ୬୨



## ଚୌରାନବେ

ତୁମର ଶୁଭାଶୀଷ ଅମୃତ ଧାରା ସମ
ବରଷେ ଶିରେ ମମ ପଡ଼ଉ ପ୍ରିୟତମ ।
ନ ପାର ବୁଝି ସିନା ଉଦ୍ଦେଶ୍ୟ ତବ ଗୂଢ଼
ବିନ୍ଧୁଥେ ବିଷ ସମ ମଣଇଁ ମୁହିଁ ମୂଢ଼ ।
ଆଘାତ ମୋତେ ଯାହା ଲାଗଇ ବିଷ ପରି
ତୁମର ଶୁଭାଶୀଷ ଗରଭେ ଥାଏ ଭରି
ନ ପାରି ବୁଝି ଯେଣୁ ଉଦ୍ଦେଶ୍ୟ ଛଡ଼ା ତବ
ଅଯଥା ମନବ୍ୟଥା କରେ ମୁଁ ଅନୁଭବ ।
ମଙ୍ଗଳମୟି ସିନା ତୁମର ସାରା ସୃଷ୍ଟି
ଭବିଷ୍ୟ ଦେଖିବାକୁ ନାହିଁ ମୋ ଦୂରଦୃଷ୍ଟି ।
କଳବ କେମନେ ମୁଁ ଛପାଇଁ କେଉଁ ପଥେ
ଚଳାଇ ନିଅ ନାଥ, କାହାକୁ କେଉଁ ମତେ ।

ତୁମେତ ସୂତ୍ରଧର, ଜଗତ ରଙ୍ଗାଳୟ
କାହାକୁ କେଉଁ ପର କରାଅ ଅଭିନୟ ।
ତୁମକୁ ଜଣା ସେଦା ? ନର୍ତ୍ତକ ମୁହିଁ ଖାଲି
କରଇଁ ଅଭିନୟ, ଆଦେଶ ତବ ପାଳି ।
ତୁମେ ତ ସୂତ୍ରଧର ଦର୍ଶକ ପୁଣି ତୁମେ,
ମୁଁ ଖାଲି ଅଭିନୟ କରଇ ରଙ୍ଗଭୂମେ ।
ତୁମର ନିର୍ଦ୍ଦେଶରେ, ତୁମର ପ୍ରୀତି ପାଇଁ,
ତୁମର ଇଚ୍ଛା ସଦା ସ୍ୱାତନ୍ତ୍ର୍ୟ ମୋର କାହିଁ ?

[illegible]
୨୭ । ୯ । ୪୬



# ଶ୍ମଶାନରେ

ସ୍ୱଜନ ଯାହାର କେତେ
ନୟନୁଁ ଲୋତକ
ଛାଡ଼ିକ ପରାଣେ କେତେ—
ହେଲେ ତନ୍ଦ୍ରା ଦକ .
ଅଭାବର ଧକ୍କା କେତେ
ବାଜନ ଯା ବୁକେ
ଆକୁଳିତ ହୋଇନ ଯା
ପ୍ରାଣ ଦୁଃଖେ ଶୋକେ !
ଏଥ କାହୁଁ ଛାଣିତ ଉହ
ଝଣ୍ଣୁର ବେଦନା
ନଖାଏ ଯେ କୋଟି ପ୍ରାଣେ
ବିଳାପ ବାଜଣା ?
କୋଟି ପ୍ରାଣ ଢଳେ ଢଳେ
ଯେ ଅକଭା ତଥା
ଗାଇବ କେମନେ କହ
ତା କାତର କଥା ?
ତେଣୁ ପ୍ରଭୋ ! ଦେଇଛ କି
ଦୟା କରି ମୋରେ
ଥିବାତ ଅଶାନ୍ତି ସ୍ୱର୍ଗ
ଏ ପରାଣ ପୁରେ ?

ଜାଣିବାର ଲାଗି ଖଣ୍ଡ କଷଣର କଥା
ଜଗାଅ ନ ପ୍ରାଣେ ଶତ ଅଭାବର ବ୍ୟଥା ?
ଅଭାବ ଅଶାନ୍ତି ଅବା ବିଷାଦ ବେଦନା
ତୁମରି ଦୟାର ଦାନ ବୋଲି ହୁଏ ଜଣା ।
ଦୁଃଖେ ଶୋକେ ଆକୁଳିତ ହୁଏ ଯେବେ ଚିତ୍ତ
କଣ୍ଠୁ ମୋର ଝରେ ଖଣ୍ଡ ବ୍ୟଥାଭରା ଗୀତ ।
ତବ ଦୟା ଦାନେ କିପାଁ ମଣିବି ମୁଁ ବିଷ ?
ଛନ୍ଦ ବେଶେ ସିନା ସବୁ ତବ ଶୁଭାଶିଷ ।

ଚୌଲସଗ୍
୧୦ । ୧୨ । ୬୨



# ଛଦ୍ମାନବେ

ପ୍ରାଣପୁରେ ମୋର
ଆସିଲ ଯେବେ ପ୍ରିୟ
ସହସା ଗଲା ଭାଙ୍ଗି
ଭିଡ଼ିଲା ଯେବେ ଭୁଜ
ଚୁମ୍ବିଲ ଯେବେ ଫେଡ଼ି
ସରମ ଘୋନେ ଲୁଡ଼ି
ଅଧର ପୁଟେ ମମ
ଆସିଲ ଯେବେ, ଅଙ୍ଗ
ଥବଡେ ବୁକୁ ପରେ
ବାନ୍ଧିଲ ପ୍ରାଣ ମୋର
କହିଲ ଚୁପି ଚୁପି
ମୋ ପ୍ରାଣ ଉପବନେ
ଯତନେ ବଢାଇଲ
ଉପାଡ଼ି ଦେଲ ପୁଣି
ଯାମିନୀ ଅବସାନେ
ରହିଲି ପଡ଼ି ଏକା

ପକାଇ ପଦ ରେଣୁ
ବଣେଥେ ବାଇ ବେଣୁ
ସ୍ୱପନ ନିଦ ମୋର
ହେ ପ୍ରିୟ ! ଗଳେ ମୋର
ଅଳସ ଆଖିପତା
ଗଲା ମୋ ଅଙ୍ଗଲତା ।
ସରସ ଛବାଧର
ହେଲା ମୋ ଥର ଥର
ଦେଲ ଗୋ ଭିଡ଼ି ମୋରେ
ଅତୁଟ ପ୍ରୀତି ଡୋରେ ।
ମୋ କାନେ କେତେ କଥା
ପୋତିଲ ଆଶା ଲତା
ସେନେହ ବାରି ଢାଳି
କିସ ବା ମନେ ଭାଳି ।
ପଳାଇ ଗଲ ତୁମେ
ନିରାଶା ମରୁଭୂମେ ।

୨୬ । ୧୦ । ୬୨

# ସନ୍ତାନବେ

ଦୁଃଖ କଷାଘାତ
କରୁଛି ସଦା ମୁଁ
ଯେହେତୁ ସେ ତବ
କରିବ କେମନ୍ତେ
କିବା ଇଚ୍ଛା ତବ
ନାହିଁ ମୋ ଶକତି
ମଣୁଛି ଯାହା ମୁଁ
ଥାଇ ପାରେ ସୁଧା
ତୁମେ ଯେଣୁ କର
ସୁଖ ଅବା ଦୁଃଖ
ସାଦରେ ବରଣ
ଧରିବାକୁ ମୋର

ଅଭାବ କଷଣ
ଜୀବନ ଭୂଷଣ
ଅନୁଗ୍ରହ ଦାନ
ତାକୁ ପ୍ରତ୍ୟାଖ୍ୟାନ ?
ଜାଣିବ କେମନ୍ତେ
ଭବିଷ୍ୟ ଦର୍ଶନେ
ଏବେ ବନ୍ଧ ପରି
ତୋ ଗର୍ଭେ ଭରି ।
ମୋ ଭାଗ୍ୟ ବିଧାନ
ଯାହା ତବ ଦାନ ।
ବିନା ଆନ ପଥ
ନାହିଁତ ଶକତି ।

କେନ୍ଦ୍ରପୁର
୯ । ୧୧ । ୮୨



# ଅଠାନବେ

ଲାଗିଛି କି ଆଜି ବିଶ୍ୱ ବକ୍ଷେ
ଧ୍ୱଂସର ଅଭିଯାନ
ଧ୍ୱଂସ ବାର୍ତ୍ତା ପ୍ରଚାରି ବୁଲୁଛି
ଭୀମ ବେଗେ ପବମାନ ।
ଘୁରୁ ଘୁରୁ ନାଦେ ଗର୍ଜି ଉଠୁଛି
ପ୍ରଳୟ ବିଷାଣ ଆଜି
ଭୀମ କମ୍ପନେ ମହା ମହୀରୁହ
ଅନ୍ତରେ ପଡଇ ଭାଜି ।
ଥରି ଉଠେ ଆଜି ଧନୀକ ସଉଧ
ଭାଜି ପଡେ ଦୀନ କୁଟୀ
ଯମ ଦଣ୍ଡ ଲଭି ଚରାଚର ଆଜି
ଧୂଳିରେ ପଡନ୍ତି ଲୋଟି ।
ଅମ୍ବରେ ନାଚେ ଧୂର୍ଜଟି ଆଜି
ଉଡାଇ ପ୍ରଳୟ ବାନା
ତାଣ୍ଡବ ଲୀଳା ନିରେଖି ଧରଣୀ
ସଭୟେ କମ୍ପମାନା ।
ଡ଼ବ ଡ଼ବ ବାଜେ ଡମ୍ବରୁ ଆଜି
ଗୁରୁ ଗମ୍ଭୀର ସ୍ୱରେ
ପ୍ରଳୟ ରାଗିଣୀ ବାଜି ଉଠେ ଅବା
ପ୍ରକୃତ ପରାଣ ପୁରେ ।

ଆତୁରେ କାନ୍ଦି ଡାକେ ଜଗତରେ
କହ କହ ଭଗବାନ
କିବା ଅଭିପ୍ରାୟେ ଚଳାଅ ହେ ଆଜ
ପ୍ରଳୟର ଅଭିଯାନ ?
କର ଯଦି ଖାଲି ପ୍ରଳୟର ଲୀଳା
ତୁଚ୍ଛା ଖେଳ କଉତୁକେ
ନିର୍ମମ, ତୁମ୍ଭ ନାହିଁ କି ବେଦନା
ବାଜଇ ନିଖିଳ ବୁକେ ?
ନବୁଝା ଅଛଇ ଯଦି କିଛି ତବ
ଗୂଢ ଅଭିପ୍ରାୟ ତହିଁ
ଅନ୍ଧ ଯେଣୁ ମୁଁ ଭବିଷ୍ୟ ଦର୍ଶନେ,
ପାରିବି କେମନେ କହି ?
ସମ୍ବର ଏବେ          ରୁଦ୍ର ମହାନ
ପ୍ରଳୟର ଅଭିଯାନ
ଶାନ୍ତ ମଧୁର          ସୁନ୍ଦର ରୂପେ
ବିରାଜ ହେ ଭଗବାନ ! *

୧୬।୧୧।୪୨
ଓ
୧୭ ୧୧।୪୨



* ୧୯୪୨ ନଭେମ୍ବରର ପ୍ରବଳ ତୋଫାନ ଦର୍ଶନେ ।

# ଅନେଶ୍ୱର

କାହିଁ ବା ସ୍ୱର୍ଗ କାହିଁ ବା ନର୍କ
କାହିଁ ଅବା ଭଗବାନ,
ଅତୁଳ ବିଭବେ ବଇକୁଣ୍ଠ ଧାମେ
ବିରାଜେ ଯା ଅଧିଷ୍ଠାନ ?
ସଂଶୟ ଦୋଳାରେ ଦୋହଲା ଦୋଳାୟିତ
ମନ ମୋର ଅନ୍ଧ ଧନ୍ଦ
ଆକୁଳେ ପୁଚ୍ଛିଲି ଗଗନେ ପବନେ
'ଦେଖିଛନ୍ତି କି ତାଙ୍କୁ କେହୁ ?'
ପବନ କହିଲା ସ୍ୱରଗ ନରକ
ବଇକୁଣ୍ଠ ଏଥି ନାହିଁ
ଗଗନ କହିଲା ବିଶ୍ୱ ବ୍ରହ୍ମାଣ୍ଡରେ
କାହିଁ ତ ଦେଖିଲି ନାହିଁ ।
କହିଲା ମନ ମୋ ପାଗଳ ପରାଏ
ବୁଲୁଛୁ ଯାହା ତୁ ଖୋଜି
ନିମିଳି ନୟନ ଚାହଁରେ ଭିତରେ
ପାଇବୁ ଯାକୁ ତୁହି ।

ଦୟା କ୍ଷମା ସ୍ନେହ ସହାନୁଭୂତିର
ଝରଣା ଝରୁଛି ଯହିଁ
ନରେଖି ପାରିବୁ ସ୍ୱରଗ ରାଇଜ
ବିରାଜଇ ସଦା ତହିଁ ।
ଭରି ଅଛି ଯହିଁ ସ୍ୱାର୍ଥ ରାଗ ଦ୍ୱେଷ
ଲୋଭ ଅବା ଅହଂକାର
ପୂତି ଗନ୍ଧମୟ ସେହି ସ୍ଥାନ ସିନା
ଅଟଇ ନରକ ଦ୍ୱାର ।
ମନୋମୟ କୋଷେ ଜ୍ୟୋତି ରୂପେ ରାଜେ
ଆତ୍ମାରୂପୀ ନାରାୟଣ
ସେଇ ଅନ୍ତର୍ଯ୍ୟାମୀ ଜଗତ କରତା
ଭଗବାନ ପୂର୍ଣ୍ଣ ବ୍ରହ୍ମ ।

ଆସିକା
୩୧।୧୨।୭୨



# ୫୯

ଜର୍ଜରା ହେବ ହେ ଯେବେ ମୋର ବୀଣା ତାର
ନ ଉଠିବ ଆଉ ନୂଆ ରାଗର ଝଙ୍କାର ।
ଛିଣ୍ଡା ଲାଉ ବଜାଇବା ବେସୁରା ବାଜଣା
ନ ଉଠିବ ଯେବେ ନୂଆ ସଂଗୀତ ମୂର୍ଚ୍ଛନା ।
ନ ପାରିବ ଯଦି ମୋହି ବଣୃଜନ ମନ
ଜୀର୍ଣ୍ଣ ବୀଣା ରଖି ଆଉ କିବା ପ୍ରୟୋଜନ ?
ଏଣୁ ମିନତି ସଖା କରେ ବାରବାର
ନ ଛିଡ଼ୁଣୁ ମୋ ବୀଣାର ଗୋଟି ଗୋଟି ତାର ।
ଭାଙ୍ଗି ଦେବ ଦୟା କରି ଜୀର୍ଣ୍ଣ ବୀଣା ଗୋଟି
ବେସୁରା ରାଗିଣି ଯେହ୍ନେ ନ ପାରିବ ଫୁଟି ।

ବ୍ରହ୍ମପୁରରୁ ଗୁଣପୁର ଯିବା
[illegible] ରେଲଗାଡ଼ି ଉପରେ
୨୭ । ୧ । ୪୩



ମୁଦ୍ରକ—ଶ୍ରୀ ନବଜମୋହନ ରାୟ, ମୁକ୍ତର ପ୍ରେସ—କଟକ, ୧୯୪[illegible]